



ପ୍ରାଚୀ ଗ୍ରନ୍ଥମାଳା ଏକତ୍ରିଂଶ

# ଚଉତିଶା-ମଧୁଚକ୍ର

---

୪




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ଚତୁର୍ଥ ଖଣ୍ଡ )

---

ପ୍ରାଚୀ ସମିତି ପକ୍ଷରୁ

ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି. ଏ.ଙ୍କ

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

---

ପ୍ରକାଶକ :—

ପ୍ରାଚୀ ସମିତି, କଟକ

ମୂଲ୍ୟ ଅଠଅଣା

# ସୂଚୀ

## ପ୍ରାଚୀ ସମିତିର ପ୍ରକାଶିତ

ଉତ୍କଳର

ଭକ୍ତବର **ଦୀନକୃଷ୍ଣ ଦାଶ**ଙ୍କର

ନୂତନ କାବ୍ୟ

# ଜଗମୋହନ ଗ୍ରନ୍ଥ

କବି ପୁରୀରେ ଥିଲାବେଳେ ଜଗନ୍ନାଥଙ୍କର ସମସ୍ତ ଯାତ୍ରା ଦର୍ଶନ କରି ନିଜର ଅନୁଭୂତିକୁ ସୁନ୍ଦର, କମନୀୟ ଭାଷାରେ **ବର୍ଣ୍ଣନା** କରିଅଛନ୍ତି । ପାଠକଲେ ଏକାବେଳକେ ଭକ୍ତିରେ ଓ ସୁନ୍ଦର ସାହିତ୍ୟିକ ବର୍ଣ୍ଣନା ଚାତୁରୀରେ ବିହ୍ୱଳ ହେବାକୁ ହୁଏ ।

ମୂଲ୍ୟ ଆଠଅଣା ମାତ୍ର

ବାଙ୍କୀ ନିବାସୀ

## ଶ୍ରୀ ପଦ୍ମନାଭ ହରିଚନ୍ଦନଙ୍କର

# ଶଶିରେଖା

## ନୂତନ କାବ୍ୟ

ପ୍ରକାଶିତ ହେଲା ! ପ୍ରକାଶିତ ହେଲା ! !

ସାହିତ୍ୟରସିକେ ! ପ୍ରାଚୀର ଉତ୍କଳ-ସାହିତ୍ୟକୁ ନୂତନ ଦାନ ଗ୍ରହଣ କର—ସାହିତ୍ୟସେବା ପୂର୍ଣ୍ଣକର । ଶଶୀରେଖା ବାଳାର ପ୍ରଣୟ ଚରିତ ଲାବଣ୍ୟବତୀ ପରି କାବ୍ୟ-କଳାରେ ଚିତ୍ରିତ । ଶବ୍ଦ ସମାବେଶ କମନୀୟ, ରଚନା-ଚାତୁରୀ ଅଦ୍ଭୁତ । ପାଠକଲେ ରସିକ ମାନେ ମଜିବେ ।

# ଚଉତିଶା ମଧୁଚକ୍ର

## ମନ୍ଦାକିନୀ ଚଉତିଶା

ଉତ୍କଳର 'ଦୂତ'—ଚଉତିଶାମାନଙ୍କ ମଧ୍ୟରେ ମନ୍ଦାକିନୀ ଚଉତିଶା ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିବ । ଏହା ଏ ପର୍ଯ୍ୟନ୍ତ ଲୋକ ଲୋଚନ ଗୋଚରକୁ ଆସି ନଥିଲା । ବୈଷ୍ଣବ ଦାସଙ୍କ ପ୍ରତିଭାର ବିଶିଷ୍ଟ ମୁଦ୍ରା ଏହା ଉପରେ ସ୍ପଷ୍ଟ ଅଙ୍କିତ ଅଛି । ପୁରାତନ କବିତାର ଚରମୋତ୍କର୍ଷ ଆମ୍ଭେମାନେ ଦେଖୁଁ ଉତ୍କଳ ଭୂମିରେ, ବୈଷ୍ଣବ ଦାସଙ୍କ କବିତା ଏହି ଚରମୋତ୍କର୍ଷର ଯେ ଅନ୍ତର୍ଭୁକ୍ତ କହିବା ବାହୁଲ୍ୟ ।

ରାଗ—କାମୋଦୀ

କୃପାଲୋଲଲୋଚନା          କଳକଣ୍ଠବଚନା
କନକ-ପ୍ରତିମ-ବରନା
କୁନ୍ଦସୁନ୍ଦରଦନ୍ତୀ          କମନୀୟ ମୂରତି
କନକକମଲବଦନା ରେ
ମନ୍ଦାକିନି !
କଥିକ ମୋ ଦୋପାଇଁ ଯିବୁ
କୋମଳେ ଯେମନ୍ତ କହିବୁ
କସ୍ତୀକ୍ରୀଡ଼ାଗମନ !          କୃପା କରିବୁ ଯେବେ
ରସିକ ଯୁବା ଜାଆଇବୁ ରେ
ମନ୍ଦାକିନି ! । ୧ ।

ଖଞ୍ଜନନୟନା ସେ କୋମଳା ସୁଦୟାଳୁ
ଯେହ୍ନବ ମୋହୋ ଉପଗତ
ଖଣ୍ଡେନ୍ଦୁଶେଖରହିଁ କରିବେ ସେ ଦୟାଳୁ
ମଙ୍ଗଳ ହୋଇବ ଜୀବନ ରେ
ମନ୍ଦାକିନୀ !
ଖର ଅପାଙ୍ଗ ଚନ୍ଦ୍ରମୁଖୀ
ଖେଳନ୍ତା ନେତ୍ରାନ୍ତେ ଅନାଇଁ
ଖଣ୍ଡା ମଦନ ହାଥେ ଶାଣ ଧରି ମୁଁ ଦେଲି
ଆପଣା ଶିର ଛେଦ ପାଇଁ ରେ
ମନ୍ଦାକିନୀ ! । ୨ ।

ଗାଢ଼ହୃଦୟା ଯେଣୁ ମୋହୋର ଅନୁନୟ
ଶୁଣିଲେ ବଢ଼ିବ ମଦନ
ଦୃଢ଼ ହୃଦୟ ହେଲେ ଭିତରେ ସୁରସ
କୁମୁଦନାଳକା ଯେସନ ରେ
ମନ୍ଦାକିନୀ !
ଗର୍ବ ମନରେ ନ କରିବୁ
ଗୁପତ ସମୟ ଠାଭରୁ
ଗନ୍ଧର୍ବପତ୍ନୀ ମନ ଯେମନ୍ତେ ମୋହୋଠାରେ
ବଳଇ ହେମନ୍ତ କରିବୁ ରେ
ମନ୍ଦାକିନୀ ! । ୩ ।

ଘନଜଘନା ନାସ୍ତେ ଦେଖିବ ମୋ ବେଦନା
ଯେନାଙ୍କ ବନ୍ଧୁ ବ୍ୟସନ୍ତ

ଘଟଣ ତୋ ବଦନ          ଦରଶନ ବିହୀନେ
ମଦନ ହୋଇଲା କୃତାନ୍ତ ରେ
ମନ୍ଦାକିନୀ !
ଯେଣୁବ ଜୀବନ ତାହାର
ଘନସ୍ତନି ! ତୁ ପ୍ରଭାକର
ଯେଣୁ ଯେବେ ଯେ ବି—          ନୟ୍ନ ଶ୍ରବଣ ପଥେ
ଜୀବନ ହୋଇବ ତୋହୋର ରେ
ମନ୍ଦାକିନୀ ! । ୪ ।

ନଳିନ ଇନ୍ଦୀବର          ନୀଳକଣ୍ଠ ଚକୋର
ମଦର ମୀନ କାମଶର
ନୟନ ତୁଳନାକୁ          କହିଁ ଗୁଣେ ଯେ ସମ
ଚଞ୍ଚଳାୟତଲୋଚନାର ରେ
ମନ୍ଦାକିନୀ !
ନାଗରୀମାନେ ମୋତେ ଚାହିଁ
ମୋହ ମନ୍ତ୍ରରେ ଭୁଲିଥାଇ
ନ ଚାହିଁଲ ଯଦ୍ୟପି          କଲ ସେ ଚାହିଁଗଲା
ନୟନରୁ ତା ଯାଉନାହିଁ ରେ
ମନ୍ଦାକିନୀ ! । ୫ ।

ଚତୁର ପଣ ତାର          ଲଙ୍ଘିବାକୁ ଗୋଚର
କୋଦଣ୍ଡ ସମସ୍ତ ପ୍ରକାରେ
ଚଳିବା ବିନା ଯଥା          ମହା ଗୁପତ ହୋଇ
ଅଛିଲି ଥାଇ ବନ୍ଧନରେ ରେ
ମନ୍ଦାକିନୀ !

ଚମତ୍କାର ଏହି ତାର
ଚଞ୍ଚଳାପ୍ରତନପ୍ରନାର
ଗ୍ରହିଁବା ମାତ୍ରେ ଅନା— ୟାସରେ କହିଯାଇ
ଅସ୍ୱୀକ୍କ ର ସ୍ୱୀକାର ରେ
ମନ୍ଦାକ୍ତନ ! । ୬ ।

ଛୁଅକାନ୍ତ ସିହ୍ନିଁଣୀ ଛଇଳରେ ଗୃହାଣୀ
ଶୁଣିଲେ ବନସ୍ତୁ ମୋହୋର
ଛାଡ଼ ସମସ୍ତ କ୍ଳେଶ ମନୋଗତ ବିଳାସ
ଉତ୍ସାହ ବଢ଼ିବ ତାହାର ରେ
ମନ୍ଦାକ୍ତନ !
ଛୀନୋଦଷ୍ଟ ମନ ନ ପାଇ
ଛାଡ଼ ପଡ଼ିବ ତୁମ୍ଭେ ନାହିଁ
ଛୁଦ୍ଧମଣ୍ଡନା ଯେବେ ମନେ ଆନ ଯେନିବ
ଏମନ୍ତ କହିବୁ ବୁଝାଇ ରେ
ମନ୍ଦାକ୍ତନ ! । ୭ ।

ଯଥା ସିନ୍ଦୂର ରଜ ମସ୍ତକରେ ମଣ୍ଡନ
ଚନ୍ଦନ ସର୍ବାଙ୍ଗ ମଣ୍ଡନ
ଜାଣିଲେ ହେଁ ଏମନ୍ତ ସମସ୍ତ ଲୋକଙ୍କର
ଚନ୍ଦନଠାରେ ବନ୍ଧୁ ମାନ ରେ
ମନ୍ଦାକ୍ତନ !
ଯେବେ କରିବ ବାଳା କୋପ
ଜାଣି ମୁ ସେ ହେତୁକଲାପ

ଯେମନ୍ତେ ନାନା କାଷ୍ଠ— ଧୂମ ଧୂମରେ ଲେଖା
ଯଥା ଅଗୁରୁ ଧୂମ ଧୂପ ବେ
ମହାବଳ ! । ୮ ।

ଝଳଦଶନୀ ପ୍ରିୟା ସହଚରୀମାନଙ୍କୁ
ଗୃହିଁ କହିବ ଅନଙ୍ଗରେ
ଝଳ ଝଙ୍କୃତ ଭାବ ଗନ୍ଧ ବିକ୍ରମ ଲବ
ଛୁଇଁଥିବ ସେ ବଚନ ରେ
ମହାବଳ !
ଝଗଡ଼େ କରନ୍ତୁ ଭୁ ଠାବ
ଝଟକଦାସୀ ଗୂଢ଼ଭାବ
ଝପନୟନା ନୋହି ପ୍ରସନ୍ନ ଅପ୍ରସନ୍ନ
ନୟନ ଭାବ ପ୍ରବୋଧିବ ରେ
ମହାବଳ । ୯ ।

ନୃପ ବଞ୍ଚିଲା ବୋଲି ଭରସା ହୋଉ ନାହିଁ
ନୃପରକ୍ଷକରେ ମନ୍ତ୍ରନା
ନଳିନ ନାଳୀ କଣ୍ଠ— କରେ ବେଷ୍ଟିତ ହେଲେ
ମଧୂପ ଛଦଗଚ୍ଛମନା ରେ
ମହାବଳ !
ନିସର୍ଗ-ଚଞ୍ଚଳ-ନେତ୍ରାକୁ
ନିର୍ମଳକେତକୀଗାତ୍ରାକୁ
ନ କରନ୍ତୁ ଆଶଙ୍କା ଏହି କଥା ବଚନ
ସୁରତପ୍ରବୃତ୍ତିରପାତ୍ରାକୁ ରେ
ମହାବଳ ! । ୧୦ ।

ଝଙ୍କାଏ ଯେବେ ରାଗ    ନୋହିବ ଶୀତ୍କାର
ଏ କଥା କହ ତ ପାଠକ୍
ଝଙ୍କଯରବଗର—    ଅଗ୍ନି ମଧ୍ୟରେ ଅଛି
କେମନ୍ତ ପ୍ରକାରେ ତାରବୁ ରେ
ମନ୍ଦାକିନ !
ଝେଙ୍କି ଅଛି ନୟନ ମନ
ଝାଙ୍କ ଉହ୍ଲଅଛି ଜୀବନ
ଝଲବ ଝାଣ ହୋଇ    ରହିବ ପାଇଲେ ତ
ସରସ ନୀରସ ବଚନ ରେ
ମନ୍ଦାକିନ ! ।୧୧।

ଠିଅ ଯେ ହୋଇ ଥାଇ    ସଖୀ ଅବୃତ ହୋଇ
ଅନ୍ତର ଗଗନେ ସୁକେଶୀ
ଠିକ ନକ୍ଷତ୍ର ଗଣ    ବେଷ୍ଟିତ ହୋଇ କରି
ଯଥା ଶରଦ ପୂର୍ଣ୍ଣି ଶଶୀ ରେ
ମନ୍ଦାକିନ !
ଠିକ ଭ୍ରମର କାନ୍ଧା କଟେ
ଠଣ ଅଲଙ୍କ କାନ୍ଧା ଠାରେ
ଠାଠିକ କର ଅବ—    ଧ୍ୟାନ ଅବକାଶରୁ
ପାନ କେ ଖଣ୍ଡୁଥାଇ ଧୀରେ ରେ
ମନ୍ଦାକିନ ! ।୧୨।

ଡମ୍ବରୁମଧ୍ୟମାର    ନବୀଣ କବିବାର
ଲେଖେହେଁ ହନ୍ତୁ ନାହିଁ ମନେ

ଡୋଲା ପ୍ରଥମାର ମୁଁ    ଶ୍ୟେମଙ୍କ କଥା ଶୁଣି
ଅଦ୍ୟାପି ରଖିଛୁ ଜୀବନେ ରେ
ମନାଭନ !
ଡର ଜୀବନକୁ ନ ଯାଇ
ଡେଉ ମନ ଗୃହକ ଥାଇ
ଡାଳମ୍ବୀଜଦନ୍ତୀ    ଅବଶ୍ୟ ବରଷଇ
ବୋଲି ମେଘକୁ ଖୁହୁଁ ଥାଇ ରେ
ମନାଭନ ! । ୧୩ ।
ଢାଳବ ନାହିଁ ମନ    ମୋହୋର ବିଷୟରୁ
ମନକୁ ଏମନ୍ତ ଅପୂଛୁ
ଢାଳେଣ୍ଟେ ସେ ସୁଶୀଳା    ସୁଠାମା ପ୍ରେମକଳା
ପ୍ରଣୟିଅବଦ୍ଧା ମୃଗାକ୍ଷୀ ରେ
ମନାଭନ !
ଢାଳବ ଯାହାରେ ନୟନ
ଢଳବ ସକଳ ଗିଆନ
ଢମ ମୁ କହୁ ନାହିଁ    ସେହି ପାଦ ସେବାକୁ
ରଖା କରଛୁ ମୁଁ ଜୀବନ ରେ
ମନାଭନ ! । ୧୪ ।
ଅଣୁମଧ୍ୟା ଅଣି    ଆଣି ପାରିବାକୁ ତ
ଅବନୀମଣ୍ଡଳରେ ନାହିଁ
ଅନାୟାସ ଲୋଚନେ,    ଅନଙ୍ଗ ଅକୂପାର
ପାରଇ ଭୁଞ୍ଜାଇ ବଢ଼ାଇ ରେ
ମନାଭନ !

ଅସାବଧାନ ନ କରବୁ
ଅବଶ୍ୟ ଯେଥୁ ଉଦ୍ଧରବୁ
ଅନାୟାସ ନୋହଇ          ଅମୂଳନସୂନାର
ତୁହି ସେ ଯେଥକୁ ପାଉବୁ ରେ
ମନୋଭଞ୍ଜନ ।। ୧୫ ।

ତନୁ ଦାନ ଦେବାକୁ          ତରଳାୟତନେତ୍ରା
ମନରେ ମନ୍ଥନ କରବ
ଧନଦାନେ ଜୀବନ          ରକ୍ଷା କରିବା ଫଳ
ହେମଗିରିଦାନେ ନୋହିବ ରେ
ମନୋଭଞ୍ଜନ !
ଭୁଙ୍ଗସ୍ତନ କନକଗିରି
ତାହି ତ ଦେଉଛୁ ସୁନ୍ଦରୀ
ତନୁଦାନ ଦେବାର          ପ୍ରତିଦାନ ଦେବାର
କେ ଅବା ପାରିବ କହିବାର ରେ
ମନୋଭଞ୍ଜନ ।। ୧୬ ।

ଥୋଇତ ଅଛୁ ଯତ୍ନ          କରି ଅନେକ ରତ୍ନ
ଶୃଙ୍ଗାରଖଣିରେ ସଜାଡି
ଥୋକାଏ ଆଲିଙ୍ଗନ          ଥୋକାଏ ଚୁମ୍ବନ
ଅଧର ପାନାଦ କବାଡ଼ି ରେ
ମନୋଭଞ୍ଜନ !
ସ୍ତନେ ନଖ ଦଶନ ପଦ
ସ୍ତବର ନାନା ବନ୍ଧ ବାଦ

ସ୍ଥୂଳ ଦାନକୁ ଯେବେ  ମନରେ ବିଗୃହିବ
ଦେବ ତା ସକଳ ସମ୍ପଦ ରେ
ମନାବନ ! । ୧୭ ।

ଦମ୍ଭହାସ୍ୟ କଟାକ୍ଷ  କର୍ଣ୍ଣରେ ଅଧିକ୍ଷେପ
ଅନବରତେ କରୁଅଛୁ
ଦରିଦ୍ର ପ୍ରାର୍ଥନା  କରୁ ନ ପାଇଁ ଗଲେ
କି ଯଶ ପାଇବ ମୃଗାକ୍ଷୀ ରେ
ମନାବନ !
ଦୁଃଖନାଶିନୀ ସ୍ନେହ ପ୍ରକାର
ଦଣ୍ଡେ ମାତ୍ର କର ବିଚାର
ଦୟାରେ ପୂର୍ଣ୍ଣମନା  ଦୁଃଖ ଦୁଃଖ ଶୁଣି
କରିବୁ ଏଥ ଉପଶମ ରେ
ମନାବନ ! । ୧୮ ।

ଧୀର ଗମନା ରମ୍ୟ  ସର୍ବାଙ୍ଗ ସୁଲକ୍ଷଣୀ
ସୁରଙ୍ଗ ସାରଙ୍ଗ ପତାକା
ଧାତା ଅଛୁ ସଜାଡି  ବଡ଼ ଯତ୍ନ ପଢ଼ି
ଲୋକରେ ମୋହନଲତିକା ରେ
ମନାବନ !
ଧରଣୀମଣ୍ଡଳମଣ୍ଡନା
ଧନ୍ୟ ତା ଗୃହ ବରତନା
ଧୀର ବଚନେ ମୋତେ  ତୋଷ କରତା ନାହିଁ
ସ୍ନେହୀ ଶ୍ରୀ ଜଗନ୍ନାଥ ଭଣେ ରେ
ମନାବନ ! । ୧୯ ।

ନ ଦେଖି ଥାଇଁ ଯେବେ      ସ୍ୱଜନ ଗୁଣବନ୍ତ—
ମାନଙ୍କ ସ୍ତୁତିମାନ ଶୁଣି
ନ ହେଉ ଉତ୍କଣ୍ଠା      ଥରତ ଅନୁକ୍ଷଣେ
ଈଶ୍ୱର ହେଉଥାଇ ହାଣି ରେ
ମନାକନ୍ତ !
ନୟନେ ନ ଦେଖିଲ ପୁଣି
ନୂତନ ପ୍ରେୟସୀ ସିନ୍ଧାଁଣୀ
ନେଇଁ ପ୍ରଶ୍ନର ତାର      ଆସେ ମୋ ନୟନର
ନିବାସ କଲ୍ପ ରୂପ ଜାଣି ରେ
ମନାକିନ ।। ୨୦ ।

ପ୍ରଣୟିନୀ ପ୍ରଣୟ      ପ୍ରଣତ ଭାବ ବଶେ
ପାଶେ ତ ହୋଇବ ପ୍ରବେଶ
ପଲଙ୍କ ତଳେ ଥାଇ      ପାଣି ବେନ ଯୋଡ଼ିବ
ହୋଇ ମୁଁ ହରଷ ବରସ ରେ
ମନାକିନ !
ପଦ୍ମ ନୟନା ମୁଖ ଦେଖି
ପଲକ ନ ପଡ଼ିବ ଆଖି
ପବନେ ପଦ ପ୍ରାପ୍ତେ      ତନୁ କମ୍ପ ହୋଇବ
ଧୈର୍ଯ୍ୟ ନ ପାରିବ ରଖି ରେ
ମନାକିନୀ । ୨୧ ।

ପାଟଳର କୋରକ      ପ୍ରାଏ ଅଧର ଦନ୍ତ
ହରଷ ପ୍ରାଦୁର୍ଭାବ ହୋଇ

ଫିଟିଲା ଲଜ୍ଜାନେତ୍ରେ ପଡ଼ିଲ ଅଚ୍ଛାଦବ
ପ୍ରିୟା ମୋ ମୁଖକୁ ଅନାଇଁ ରେ
ମନ୍ଦାକିନୀ !
ଦୃଷ୍ଟ ଦୋଷ ତପ ହିବ
ହରୁଣା ମୋର ନ ସହିବ
ପାଇ ବେଳକୁ ମୋର ଆନନକୁ ନ ଚାହିଁ
ବଦନ ତଳକୁ କରିବ ରେ
ମନ୍ଦାକିନୀ ! । ୨୨ ।

ବିଶେଷେ କହୁଅଛୁ ଦେବୀଲେ ମୋତେ ନେଇ
ଚରଣ ତଳେ ପକାଇବୁ
ବରବନ୍ଦନା ସ୍ୱାମ ଚରଣ ବନରୁହ
ମୋହ ବନ୍ଧୁଙ୍କ ଆଣିଦେବୁ ରେ
ମନ୍ଦାକିନୀ !
ବୋଝିଲ ପାଉଛୁ ବିଷାଦ
ବକ୍ଷସ୍ତି ଦେବତ୍ଵଙ୍କ ପଦ
ବଳୀନ ଶ୍ରୀଚରଣ ଛୁଇଁଲା ମାତ୍ରେ ମୋର
ପ୍ରାପତ ସକଳ ସମ୍ପଦ ରେ
ମନ୍ଦାକିନୀ ! । ୨୩ ।

ଲୁବନୀ ଯେ କାଳରେ ପାଠୀର ଦ୍ରବ ପୀନ—
ସ୍ତନ ବସନାଞ୍ଚଳ ହର
ଭୁବେ ଅଶ୍ଳେଷ କର ପାଶରେ ବସାଇବ
ବହୁତ ଅନୁଗ୍ରହ କର ରେ
ମନ୍ଦାକିନୀ !

ଭୟେ ନ ବଢ଼ାଇବ କର
ଭୁଜଗର ଭୁଜକୁ ତାର
ଭରସା ନୋହିବାର     ଜାଣି ରମଣୀମଣି
କଣ୍ଠରେ ଭୁଜ ଦେବ ମୋର ରେ
ମନ୍ଦାକନ ! । ୧୪ ।

ମଧୁର ହସି ପୁଣି     ମୁଖକୁ ଅନାଇବ
କ ତର ହୋଇବାର ଜାଣି
ମୋହର ଏ ଉତ୍ସବ     କଉଁ ଦିନ ହୋଇବ
ହୋଇବ ପ୍ରସନ୍ନ ଦିହାଁଣୀ ରେ
ମନ୍ଦାକନ !
ମନେ ତୁ ସନ୍ଦେହ ନ କର
ମୋତେ ସୁଦଯ୍ୟୁ ଅଛୁ ତାର
ମନାଇ କହିବୁ ରେ     କନ୍ଦର୍ପ ସରେକ୍ଷଣୀ
ସମ୍ବନ୍ଧ ନ ଛଡ଼ଇ ମାର ରେ
ମନ୍ଦାକନ ! । ୧୫ ।

ଯେତେ ମୁଁ କହୁଅଛୁ     ଯୁବା,ବୟସୀଙ୍କ ଏ
ନୋହେ ନୂତନ ପରଂପରା
ଯୋଗାଡ଼ ନ ଯୋଗାଡ଼     ଏହିରୂପରେ ଅଛୁ
କହିବ ପରିପାଟୀ ଯାଗ ରେ
ମନ୍ଦାକନ !
ଯୋଡ଼ିବା ଯେବେ ହାତୁ କର
ଯେବେ ଚରଣେ ଦେବା ଶିର

ଜାଣିବା ବେଳକୁ ଏ ଅଧିକ ତ ନୁହଇ
ଚମ୍ପକ ମଣ୍ଡନ ଶିରର ରେ
ମନ୍ଦାକିନୀ ! । ୨୬ ।

ରତିରେ ଅତି ମତି ରସବତୀ ଯୁବତୀ !
ତୁ ରସବୃଷ୍ଟି ଜଳଧର
ରହିଛୁ ଅଙ୍ଗ ଜଡ଼ି ମୋର ପ୍ରାଣପ୍ରିୟଙ୍କ
ଦେହକୁ କରି ହଟାଦର ରେ
ମନ୍ଦାକିନୀ !
ରମଣୀରତ୍ନ ମନ୍ଦହାସୀ
ରତ୍ନ ତୋହୋର ଯଶରାଶି
ରସବତୀର ସ୍ନେହେ ରହିଲା ପୁଂସ ପ୍ରାଣ
ଯମପୁରୁଁ ଲେଉଟି ଆସି ରେ
ମନ୍ଦାକିନୀ ! । ୨୭ ।

ଲାବଣ୍ୟ ଉଚ୍ଚ କୁଚ ଶ୍ରୋଣି ପୃଥୁଳ ସଙ୍ଗ
ଜଘନ ବିପୁଳ ବିଶାଳ
ଲାଗିଥିବା ନ ଥିବା ଘଣସୂ କଟିତଟ
ବସନ ଉଡ଼ାରେ ଉଜ୍ଜଳ ରେ
ମନ୍ଦାକିନୀ !
ଲାଗିଛୁ ଲୋଭ ଦେଖିବାକୁ
ଲଲନା ନଗ୍ନ ବେଶକୁ
ଲବଣୀ ପ୍ରତିମାକୁ ପାଇବା କରୁଅଛୁ
କର ବଢ଼ାଇଛୁ ଚନ୍ଦ୍ରକୁ ରେ
ମନ୍ଦାକିନୀ ! । ୨୮ ।

ବଣ୍ଟୁର ଏବେ ଚନ୍ଦ୍ର ଦେବପଥପଣ୍ଟୁର
କରଇ କୁମୁଦ ପ୍ରକାଶ
କହୁଛୁ ବେଙ୍କୁ ବେଙ୍କୁ ଏହୁ ଯେଉଁ ଉସ୍ଵାଦା
ବାଲା ବୁଝଇ ସିନା ଶ୍ଳେଷ ରେ
ମନ୍ଦାକିନ !
ବୋଲିବ ନନ୍ଦା ଅଛୁ ହିନା
କର୍ତ୍ତୁରଲେ ଗୁଣୀ କଳ୍ପନା
ବସନ୍ତକର ବାଟ ମଲୟାଚଳୁ ଅସି
କୋକିଲ ବାଣୀ ଶରଚନା ରେ
ମନ୍ଦାକିନ ! । ୨୯ ।

ସୁଧା ଗରଳ ପୂର୍ବେ ସମ୍ଭବ ହୋଇଥିଲା
ସୁଷମା ନପୃନାନ୍ତୁ ପାଇଁ
ସମ ଲୋଡ଼ିବା କାଳେ କେ କାହାକୁ ଅଧିକ
ଯାଚା କ ବଣା ନେଦେ ଥାଇ ରେ
ମନ୍ଦାକିନ !
ସତେ ହେ ହୋଇବ ଏମନ୍ତ
ସ୍ନେହ କରବ ସେ ନେହାନ୍ତ
ସାଗରଗର୍ଭରେ ଶିବ ସେବା କରବ ଫଳ
ସେ କାଳେ ହେବ ପରଣତ ରେ
ମନ୍ଦାକିନ ! । ୩୦ ।

ସନ୍ନିଧେ ବସିଥିଲେ ଚୁମ୍ବନ ଆଲିଙ୍ଗନ
ଅଧରପାନ ଦନ୍ତପଦ

ସବୁ ନଗର ଷଣ୍ଡ ଏମାନ ଲଗାଇଲେ
କଳୁହିଁ ନୋହିଲ ବିଷାଦ ରେ
ମନ୍ଦାକିନି !
ସ୍ନେହ ପାଖରେ ଥିବା ଯେତେ
ସବୁ କଥା ନୁହଇ ତେତେ
ଶ୍ୟାମା ପାଶେ ନ ଥିବ ସ୍ୱପ୍ନେ ସବୁ ପାଇବ
ସେ ଅବା ସୁଖ ଦେବ କେତେ ରେ
ମନ୍ଦାକିନି ! । ୩୧ ।

ସେ ସୁଖମାନ ସବୁ ଦୁଖକୁ ବଢ଼ାନ୍ତୁ ସିନା
ଯେବେନେହ ଥାଇ ପାଶେ ଥିବ
ସୁଜାଣଶିରୋମଣି ସମସ୍ତ ଶରୀର ତ
କେ ଏଥି ସଙ୍ଗତେ ହୋଇବ ରେ
ମନ୍ଦାକିନି !
ସୁନୟନୀ ସରସିଜମୁଖୀ
ଶୁଣିମ ସରଚିକ ହୋଇ
ସମ୍ପୂର୍ଣ୍ଣି ଦୟା କରୁ— ସରସ ବାଣୀ କହୁ
ତୋତେହିଁ ଦେବ ପଠାଇ
ମନ୍ଦାକିନି ! । ୩୨ ।

ହରଷେ କର୍ଣ୍ଣ ଦେଇ .. . ବଇରାଗ ନ ପାଇ
ହରିଣନୟନୀ ଶୁଣିଲା
ହରଷେ ତାଙ୍କୁ ଗୃହିଁ ସମ୍ଭାନ୍ତ ସମ୍ଭାନ୍ତହିଁ
ଗଣ୍ଡ ଉରଜ ପୁଲକିଲା ରେ

ମହାଜନ !
ହୃଣ୍ଡିରଧାରୀଙ୍କ ଅନାଇଁ
ହାହାହା ମନରେ କରଇ
ହରଷ ମହାକମ୍ପ ଶ୍ଳଥ ସମସ୍ତ ଅଙ୍ଗ
ପୁଲକାବଳୀ ବଳଥାଇ ରେ
ମହାଜନ ! । ୩୩ ।

କ୍ଷଣେ ପର୍ଯ୍ୟନ୍ତେ ବାଳା ମହା ଜବଦ ହୋଇ
ଖଗଜଳଧିରେ ମଜ୍ଜିଲା
କ୍ଷପାକର କି ଘନ ଉଦରେ ଲୁଚିଥିଲା
ଧଇର୍ଯ୍ୟ ତେମନ୍ତ ହୋଇଲା ରେ
ମହାଜନ !
କ୍ଷୀଣୋଦରୀର ଏ ସନ୍ତତ
କ୍ଷଣେ ହରଷ ସନ୍ତାପ
କ୍ଷୀର-ଦିକ୍କୂଜା-ପଥ ପଦ୍ମଚରଣ ଚନ୍ଦ୍ର
ବନ୍ଧୁଦାସ ରଚିତ ଗୀତ ରେ
ମହାଜନ ! । ୩୪ ।

# ବର୍ଷାଭାବନା ଚଉତିଶା

ଉତ୍କଳ କବିବର ଗୀତାବଳୀରଚୟିତା ବାଣୀଭୂଷଣ ରଘୁନାଥ ହରିଚନ୍ଦନ ବର୍ଷା ରାଗକୁ ନିଜର ଭୂଲୁ କରି ପ୍ରକୃତିର ଉପଯୁକ୍ତ ଦୃଷ୍ଟା କରିଥିଲେ । ବର୍ଷାଭାବନା ଚଉତିଶା ରସପ୍ରାପ୍ତ ବିଦଗ୍ଧ ବନ୍ଧନୀର ଦାନ । ବସ୍ତୁତଃ ଏପରି ଗୁଣବନ୍ତ କାବ୍ୟର କାବ୍ୟର ଉତ୍କର୍ଷ ଯେ ସମ୍ଭବନ୍ତା ନାହିଁ କହିବା ନିଷ୍ପ୍ରୟୋଜନ ।

(ରାଗ—ବଙ୍ଗଳାଶ୍ରୀ)

କଉଁ ପୁରୁଷ କାର୍ଯ୍ୟ ଗଉରବରେ
କରି ବିଦେଶେ ନିବାସ
କ୍ରମେ କଷ୍ଟୁଦିନ ଅବଶେଷ ଅନ୍ତେ
ପ୍ରବେଶ ଆଷାଢ଼ ମାସ ।
କାଳିକା କୁଣ୍ଡଳ— କଳା ହୋଇ ଆସି
ଆକାଶେ ଉଦେ ହୋଇଲା
କୋମଳ ଭାବେ ଗୁରୁ ଗମ୍ଭୀର ହୋଇ
ଘନଘୋଷହିଁ ଶୁଭିଲା । ୧ ।

ଖଣକେ ଖମଣ୍ଡଳ ଯାକ ପୂରିଲା
ଅନ୍ଧାର ଦିଶିଲା ଦିଶ
ଖମଣ୍ଡଳେ ଅଛି ନିବିଡ଼ ହୋଇ ସେ
ଗିଳିଲେ ଗିରି ଶିଖର
ଘଣଘଣକେ ମହା ଘୋର ଗର୍ଜ୍ଜନ
କ୍ରମେ କ୍ରମେ ବଢ଼ାଇଲେ
ଘଣକାନ୍ତମାନେ ମେଘ ଅଙ୍ଗନେ
ଆକାଶଯାକ ପୂରିଲେ । ୨ ।

ଗମ୍ଭୀର ଗୁରୁ ଗର୍ଜନ ଶୁଣି ସେ
ଆକାଶ ଚାହିଁ ପୁରୁଷ
ଗନ୍ଧର୍ବପତ୍ନୀ ଲଭିଥିବ ଶୋଷକ
ଶୁଣି ତେଜଇ ନିଶ୍ୱାସ ।
ଗଜ ଗମନା ! ଅରେ ପୃଥୁଜଘନା !
ଏତେ ବୋଲି ମୋହ ଗଲା
ଗଙ୍ଗାଧର ବପୁ ଏହି ସମୟରେ
ପୁଣି ସଜାଡ଼ି ବସିଲା । ୩ ।

ଘଡ଼ି ଦୁଇ ଅନ୍ତେ ବଧୂଟାବଶରେ
ଜ୍ଞାନ ହୋଇଲା ପ୍ରବେଶ
ଘନଘଟା ଚାହିଁ ଘନଶ୍ୟାମ ! ବୋଲି
ପୁଣି ତେଜିଲା ନିଶ୍ୱାସ
ଦେଖିବି ଯେବେ ସୁଧାଂଶୁମୁଖୀ ପୁଣ
ପ୍ରାଣ ଏହିକ୍ଷଣି ଯିବ
ଘନଜଘନାଙ୍କ ଏ ମୋର ବିନୟ
ବଚନ କେହି କହିବ । ୪ ।

ନୀଳକଣ୍ଠ ଚନ୍ଦ୍ର କର ନାଗଶାଙ୍କ
ଲେଖିଲୁ ପ୍ରେମ ପତ୍ରିକା
ନୀଳେନ୍ଦୀବର ମୀନ ମୃଗଲୋଚନା
ମୋ ମନଭୁଲପାଳିକା
ନାହିଁ ମୁଁ ତୋ ପାଶେ କେମନ୍ତ କରି ରେ
ନେଉଥିବୁ ଦିନମାନ

ନିଶ୍ୱାସେ ତୋ ବିନୁ      ଏ ପ୍ରାଣ ରହନ୍ତୁ
ଏହି ମୋର ଜ୍ଞାନମାନ । ୫ ।

ଚନ୍ଦ୍ରବଦନ !      ଅରେ ଶ୍ୟାମରକେଶି
ଚଞ୍ଚଳାପ୍ଲୁତଲୋଚନା
ଚରଣ ପଲ୍ଲବର      ପାଇଁ ଚତୁର
ସହୁଛୁ କାମ ବେଦନା
ଶୃଙ୍ଗ ବଚନେ      ଏମନ୍ତ କହୁଥାଉ
କାହୁଁ ଅଣିମି ରଖାଇ
ଚତୁର୍ମଣି      ଶୃଙ୍ଗ କର କନ୍ଦଇ
ତେମନ୍ତ ବଚନ ନାହିଁ । ୬ ।

କ୍ଷୀଣୋଦର ପ୍ରିୟା      ଚଞ୍ଚଳ-ନୟନ-
କୋଣେ ଯେ ମୋତେ ଅନାଉ
କ୍ଷଣକ ଭିତରେ      ପ୍ରାଣକୁ ଅନେକ
ଅମୃତ ପାନ କରାଉ
ଛାଡ଼ ସେ କୁତ୍ସିତ      ମଧୁର ଅଟାଙ୍ଗ
ପ୍ରାଣ କେମନ୍ତ ଧରିବା
ଛାର ଜୀବନକୁ      ମୋହେ ଦେହେ ଧାତା
କିମ୍ପାଂ ରଖିଅଛୁ ଅବା । ୭ ।

ଜାଣିଥିଲ ଜାଣୁ—      ମଣି ଜଳକାଂଧି
ଯାମିନୀଶେଷରେ ଦନେ
ଯଉନେ ଅଣି ଯେ      ଚଉଅଣ ଦନ୍ତ
ଦେଲୁ ଯେ ମୋର ବଦନେ

ଜାଣି ନ ପାର ଯେ — ଆଲିଙ୍ଗନ କର
ପଶ୍ଚିରଲୁ ଶୂନ୍ୟମୁହିଁ !
ଯାହା କହୁଅଛୁ — ମନରୁ ମୋହୋର
ଷଣେ ଛାଡ଼ ଯାଉ ନାହିଁ । ୮ ।

ଝୀନ ବସନେ ଯେ — ଫୁଟି କର ଦଶେ
ମହାଘନ ଉଚ୍ଚ ସ୍ତନ
ଝରୁ ଯେ ଥାଉ — ମଧୁର ହାସ ସୁଧା
ଦେଖିବ ପୁଣି ନୟନ
ଝସକହାସୀ — ଶ୍ରୀ ମୁଖକୁ ଚାହିଁବା
ଯାଏ ଥାଉ ପ୍ରାଣ ରହି
ଝସକେତନ — ବିଧାତାଙ୍କୁ ପ୍ରଣୋଣି
ଏହି ବର ମୁଁ ମାଗଇ । ୯ ।

ନାହିଁ ମୋହୋର — ମନେ ଅନ ବିଚାର
ଉଇଁମ ଯେ ନବଘନ
ନୀରଜନୟନୀ — ଯୋଗେ ଅନାଇଲେ
କଣ୍ଠେ ଧରିବୁ ଜୀବନ
ନୟନେ ନୀର— — ଧାର ଚାହିଁ ରଭୁସି
ଅଲିଙ୍ଗନ ଚଣ୍ଡେ କର
ନୀପ ପୁଷ୍ପ ପ୍ରାୟେ — ଶରୀର କରୁ ରେ
ମୋ ନୟନ ମନୋହର ! । ୧୦ ।

ଚଳିଲା ଏବେ ସେ — କଥା କହୁଁ ଅଛେ
ଚଳିବାକୁ ଅଛି ପ୍ରାଣ

ଝାଣ କଟାକ୍ଷରେ    ଯେ ସେନେହ ମାନ
ହୋଇଲା ଏହୁ କାରଣ ।
ହକା ଏ ଯେ ମୋର    ଅନ୍ତର ନ ସନ୍ତୁ
ଷ କରୁଥିବୁ ସୁକେଶି !
ନେକ ପୁଣ୍ୟ ଥିଲେ    ତୋର ପାଦତଳେ
ବସି ପୁରାଇବ ଜାଣି । ୧୧ ।

ଠଠଣା କଣ ମୋହୋ    ମନ ଚରଣ
କେବା କହୁଛ ଏ କଥା
ଠାକୁରାଣୀ ହୋଇ    ତରୁକ ଧର ଯେ
ଛଡ଼ାଉ ମନର ବ୍ୟଥା ।
ଟିକେ କହୁଛ ମୋହୋ    ମନ ବ୍ୟଥାକୁ
ତୋହ ଦମନ କାରଣ
ଠଣକଦନା ସ୍ମିର    ଚୁମ୍ବନ ଦାନେ
କଟିକୁ ମୋର ଜୀବନ । ୧୨ ।

ଡାଳିମ୍ବବୀଜଦଶନୀ    ବରବୋହା
ବିମ୍ବାଧରୀ ସୁକୁନ୍ତଳା
ଡାକ ଏମନ୍ତ    କହୁଅଛୁ ତୁ ମୋର
କଣ୍ଠର ମୁକୁତାମାଳା ।
ଡମ୍ବରୁ-କର    କଟିବେ କହି ଦନ
ଦେଖିବ ଯାଇ ବଦନ
ଡର ଘୁଡ଼ାବ    ମନହିଜ-ତାପକୁ
ଦେଖି ହେବ ନୟନ । ୧୩ ।

ଚୋଷିବ ପୁଣି ସେ ଅଧରୁ ଅନଙ୍ଗ—
ଅଦ୍ଭୁ-ଶରଜ୍ୱର ସୁଧା
ଛାଡ଼ିଲେହେଁ ଏବେ ବେଦନା ନାଶିବ
ପାଇବ୍ ମୋଠେ ଶର୍ବଥା
ଛାଲ ଶୃହାଣେ ପୁଣି ପୁଣି ଶୃହିଁବ
ଅନନ୍ଦ ସାଗରେ ବୁଡ଼ି
ଚଳନ୍ତ ପ୍ରାଣକୁ ପୁଣି ରୁନ୍ଧାଇବ
ସମସ୍ତ ସଂଶୟ ଛାଡ଼ି । ୧୪ ।

ଅଟେ କତ ସେ ବନେହେଁ ନ ଶୁଅଇ
ହୃଦୟ ଉପର ଠନା
ଏଣି ନାୟୂଳୀ ଦଶ୍ରକ ଘଣ ଅନ୍ତେ
ଘେନ ସେ ମୋହୋ ବେଦନା ।
ଏଣେ ଏବେ ଏବେ ବେଦନା ମୋହୋର
କେ ଦେଖୁଅଛୁ ଶୁଣୁଛୁ
ଅପ୍ରେମଧା ଏହା ଲେଖିଦେଇ କର
ପ୍ରାଣ ରୁନ୍ଧାଅ ମୁଖାରୁ । ୧୫ ।

ତୋର ସେ ବିପୁଳ ସ୍ତନଗିରି ଶିରେ
ପୁଣି ମୋ କର ଲାଗିବ
ତରଳନୟନା ଏମନ୍ତ ଉତ୍ସବ
ବିଧାତା କେବେ କରିବ ।
ଭୁ ପଣି ମୋତେ ପୂରୁବ ପରି କର
ଦେଖି ଅସନ୍ନ ଉଠିବୁ

ଚାରୁତର ରଙ୍ଗ ତୋପ୍ପଜ ଚରଣେ
ମନ୍ଦ ପାଞ୍ଚେଟ୍ଟ ଅସିବୁ । ୧୬ ।

ଥାଅ ଥାଅ ବୋଲି ଚର ଚର ହୋଇ
ଆଲିଙ୍ଗନ ମୁଁ କରିବି
ଥିର କରି ନେଇ ପୃଥୁ ବେଳ ଶ୍ରୋଣି
ଏ ଜାନୁରେ ବସାଇବି ।
ଥିଲ ବିପୁଳ— ପୟୋଧର ମୋ ଓଷ୍ଠ
ଅଙ୍କୁଳି ଯେନ ଧରିବୁ
ସ୍ଥବିର ଭାବେ ସ୍ଥିର କରି ଚୁମ୍ବନ
ମଧୁର ହସି କି ଦେବୁ । ୧୭ ।

ଦମ୍ଭନାଶିନୀ ମୋ ନୟନେ ନୟନ
ଦେଇ ସ୍ନେହେ ଚାହିଁଥିବୁ
ଦୁଃଖ ନାଶିନୀ କାମେ ହୋଇ ଅଗ୍ୟାନ
ତନୁ କି ଚମକାଇବୁ
ହୃଦୟ ଏ ମୋର ବିଚ୍ଛେଦ ବେଦନା
ସାଗରୁ କି ଉଦ୍ଧରିବୁ
ଦରହାସିନୀ ସେ ଜାଢ଼-କଳ-କଣ୍ଠେ
ହୃଦୟରେ ଗାଇ ଦେବୁ । ୧୮ ।

ଧରି ମୁଁ ଅଙ୍କୁ ସେହୁ ଅଶେ ଜୀବନ
ପାଇବି ସେ ସୁଖମାନ
ଧୀର ଗମନୀ ମୁଁ ଧଇଲେ କି ହେବ
ଯେବେ ରଖିବ ମଦନ ।

ଧରଣୀମଣ୍ଡନୀ ଧବଳ-କିରଣ
ବଦନେ ହସି ଗୃହିଁବୁ
ଧାଇଁ ଏମନ୍ତ କହିବ, ସ୍ନେହଗର୍ଭ
ବଚନ ହସି କହିବୁ । ୧୯ ।

ନଜାଣା ମୋହ ଛାର ପାଇଁ ବେଦନା
ମାନ କେତେ ସହୁଥିବୁ
ନ ସହି କେତେ ବେଳେ ମୋହ ହୋଇବୁ
ଅବଶ ଢଳେ ଶୋଇବୁ
ନବ ଚନ୍ଦ୍ରମା ପ୍ରାୟେକ କ୍ଷୀଣ ହୋଇ
ଥିବୁ ରେ ହେମଗଉର !
ନିଶ୍ୱାସ ଟେକି ବୋଲିବୁ ଟିକେ ଚନ୍ଦ୍ର
ଜଳିବା ସହି ନ ପାରି । ୨୦ ।

ପ୍ରାଣପ୍ରିୟାର ଏ ଦୁଖ ସୁମରିବା-
ଠାରୁ ଭଲ ପ୍ରାଣ ଯିବା
ପାପୀ ଲୋକର କାମନା ସିଦ୍ଧ ନୋହେ
ଏହାହିଁ କିଁପାଁ ପାଇବା
ପୁଣ୍ଡରୀକ ପତ୍ରାୟତ ଲୋଚନା ! ରେ
ପୋଡ଼ି ଯେ ଅଛୁ ଏ ଦେହ ,
ପ୍ରଭାକର ଏହି କଥା ହୋଇଅଛି
କ୍ଷଣେ କ୍ଷଣେ ହୋଏ ମୋହ । ୨୧ ।

ପୂର୍ଣ୍ଣାବିବନ୍ଧ— ବଦନୀ ଶୁଣୁ ଜୀବ
ଫେଡ଼ିଥିଲା ଏହି କଥ

ଯାହା ଯା ବୋଲି ହୃଦରେ ମାଗିବାର
ଫଳ ହୋଇଲା ଏହାର
ଯିବ ଜୀବ ପ୍ରାଣ ଥାଉ ଏ ଦୁଃଖ
ମନେ ତ ଏ ଦୁଃଖ ନାହିଁ
ଯେତେ କହୁଛି ଏ ପ୍ରାଣ ଯିବୁ ଯିବ
ତୋର ଚନ୍ଦ୍ରମୁଖ ଚାହିଁ । ୧୨ ।

ବଧୂବଦନଟି ବସାଇ କୋଳରେ
ପାନ ଭାଙ୍ଗି ଦେବା କଥା ।
ବେଳେ ବେଳେ ଆସି ମନରେ ପଡ଼ଇ
ଘଟାଏ ମନର ବ୍ୟଥା ।
ବ୍ୟଥା ହିଁ ଗୁଣି କେତେବେଳେ କରଇ
ଏଣୁ ଏ ବଡ଼ ପ୍ରମାଦ
ବସନ୍ତ କୋକିଳ— ବଚନ ସନ୍ଦେଶେ
ଛଡ଼ାଉଛୁ ଏ ବିଷାଦ । ୧୩ ।

ଭବବନ୍ଧର ଭୂତ କାମ ମନ୍ଦରେ
ଯେ କର ଲାଗିବା ମାତ୍ରେ
ଛାଡ଼ଇ ମନରୁ ସକଳ ବେଦନା
ଚେତନା ନ ଥାଇ ଗାତ୍ରେ
ଭାବନା ତାହା ଜାଣି କରନ୍ତି ମନ
ଦେହେ ଦେଇ ଧ୍ୟାନ ଦେଉ
ଝଲସି ପୁଣି ତେଜ୍ରେ କ୍ରୀଡ଼ା ଅଛି ଡା
ପାଇବି ଜୀବନ ଥାଉ । ୧୪ ।

ମଦଭନେତ୍ରୀକ ଅଗେ ଭୃଙ୍ଗ କର
ଚାହିଁବାକୁ ବଡ଼ ମନ
ମନ୍ଦକଟାକ୍ଷୀ ତାହା ସହି ନ ପାରି
ଧେଣି କରୁ ଆଲିଙ୍ଗନ ।
ମହାଦୁଖ ନାଶ ହୋଏ ଲୋଚନର
ଶୀତଳ ହୋଅଇ ତନୁ
ମନେ ବଗୃର ତ ଏମନ୍ତ କାହିଁକି
କରୁରେ ପ୍ରିୟା ସୁତନୁ । ୧୫ ।

ଯାମିନୀ ଯାକ ଉଜାଗରେ ଥାଇ ଯେ
ନିଶିଶେଷେ ରଙ୍ଗ [illegible]ଷି
ଯିବଇ ଜୀବନ ଜନମ ବେଦନା
ଚନ୍ଦ୍ରମୁଖୀ ତାହା ଦେଖି
ଯେବେ ଯିବ ଜନ— ମାଧର ବେଦନା
ନଗଲେ ଯଉ ଏ ଜୀବ
ଜଲଜାକ୍ଷୀ ଙ୍କ ତନ୍ମ୍ୟା— ରେ ଜୀବ ଗଲା
ଏ ଯଶ ତ ରହିଥିବ । ୧୬ ।

ରହିଥିବ କଥା ଗ୍ରନ୍ଥେ ଯିବ ବ୍ୟଥା
ଏହାଙ୍କୁ କି ଲୋଭ ଅଛୁ
ରସବନ୍ତୀଙ୍କ ଚାହିଁବା ବଡ଼ ଲୋଭ
ଏ କଥା ହୋଇଛୁ ତାଙ୍କୁ
ସ୍ୱମାରତନ ଅଙ୍ଗେ ବାସ ନ ଥିବ
ଏହାଙ୍କେ ଦେଖି ପାରିବ

ଉତନ ଟିଉ କୋଃହିଏ          ଦାନ ଦେଶ
ମଉବା ନ ଲଗ୍ନ ଉବ । ୨୭ ।

ଲବଣୀ ପ୍ରତିମା          ଲଳିତ ତନୁ ତୋ
ଲଭିବ ପୁଣି ୧ଦହରେ
ଲକ୍ଷେ ଲକ୍ଷେ ଯୁଗ          ତପ ଫଳ ଅସି
ହୋଇବ କି ଏକାଠାରେ
ଲଭାଏ ଏ ସୁଖ          କାହିଁକି ନ ଥିବ
ମୋତେ ମନକୁ ଅସୁଛି
ଲାବଣ୍ୟ ଲପନୀ          ସେନେହ ବାହାରେ
ସ୍ୱର୍ଗରେ କି ଲଭ ଅଛି । ୨୮ ।

ବଚନେ ଲୋଭ୍ୟ ଏ          କହିବାକୁ ନକ
ଅସର ତୋହୋ ପ୍ରସଙ୍ଗ
ବନ୍ଧୁର କାଲ ବଡ଼          ପାପ କରି ମୁଁ
ଛଡ଼ା ଦେଲି ତୋହୋ ସଙ୍ଗ
ବିଧୁବଦନି ! ରେ          ଆପଣା ଇଚ୍ଛାଏ
ଉରଜୁ ଟେକୁ ବସନ
ବଡ ଶରଧାରେ          ଆଲିଙ୍ଗନ କରୁ
କେଣିକ ଗଲ୍ପ ସେମାନ । ୨୯ ।

ସାଉ ସୁରଭ          ସୁପାଣ୍ଡ ଅନ୍ତେ ବସି
ଖାଣ୍ଡୀ ପଣନ୍ତେ ଯେ ବନ୍ଧୁ
ସେ ଶୀତଳକୁ          ସମାନ କାହିଁ ଅଛି
ସ୍ନେହ ଶତେ ଗୁଣେ ସନ୍ଧୁ

ସେ ସେନେହ ପାଇ          ଶୁଖିଗଲା ଦେହ
ପୋଡ଼ୁଛି କାମ ହୁତାଶେ
ସହସ୍ରେ ବାର          ଦିବସକେ ପୋଡ଼ିଲେ
ପ୍ରାଣ ଥିବ ତୋର ଆଶେ । ୩୦ ।

ଶତବାର-ସଲବଣ          ଦାହ-ହେମ
ଗଉସି ଲେଖ ଗଢ଼ିବୁ
ସୁସ୍ଥ ହୋଇ ପ୍ରାଣ          ଯେମନ୍ତେ ରହିବ
ତେମନ୍ତ ଉଦନ୍ତ ଦେବୁ ।
ଷାଠିଏ ଦଣ୍ଡ          ଦିବସ ଯାକ ପ୍ରିୟେ
ସେ ବାରତା ପଢ଼ୁଥିବି
ସୁମନଶର ଶରେ          ଗଲା ପ୍ରାଣକୁ
ପ୍ରବୋଧ କରି ରଖିବି । ୩୧ ।

ଶିଶୁ ସାରଙ୍ଗ ଅପୂତ          ଲୋଚନା ରେ
ଅପୂର୍ବ ଦାସ ମୁଁ ତୋର
ସୁଜାଣ ପ୍ରଭୁ          ଦାସ ଦୋଷ ନ ଧରେ
ଏଣୁ ଭରସା ଅପାର ।
ସାନ ବଡ଼ ଯହିଁ          ସେବକ ସେବାରେ
ଅସିଅଛୁ ସେବା କରି
ସରୋଜଲୋଚନା          ଅବଶ୍ୟ ତାହା ଖି
ବିନୟ ବଚନ କରି । ୩୨ ।

ହରଷ ହୋଇ          ଲେଖରେ ସବୁ ଲେଖି
ଦୂତ କରୋଦରେ ଦେଲି

ହଂସଗାମୀ ଗତ		ବାଇତା ଅଦେଖି
ଖଣ୍ଡ ହୃଦ୍ବନ୍ଦ୍ବଂ ଉଠିଲା
ହାଥ ପାଉ ଯେନ		ଶିରେ ଲଗାଇଲା
ଅକ୍ଷର ଶ୍ରେଣୀକ ଗୃହୁଁ
ହରଷ ଶୋକ		ଚିଣାମିଣି ଲୋଚକ
ପଦ୍ମ ନୟନ ବନ୍ଦଇ । ୩୩ ।

ଯେତେମ ଶୁଣି ଏହୁ		ସମସ୍ତେ ନାୟକ
ଶୁଭେ ହୋଇଲା ପ୍ରବେଶ
କ୍ଷୀଣୋଦସ୍ତ୍ରୀ ଗୃହୁଁ		ଆନନ୍ଦ ସାଗରେ
ବୁଡ଼ି ଦୁଃଖ କଲ୍ଲ ନାଶ ।
ଛିଡ଼ି ଶଯ୍ୟାରେ		ବରବେଶ ହୋଇଲେ
ହସ୍ତ୍ର ଦାସ ରସ କହେ
ଛଣକ ଭାବ		ଶତେ ତ ଯୁଗ କହିଲେ
ସମାପ୍ତ ନୋହେ କେବେହେଁ । ୩୪ ।

# କେଳିକଳ୍ପଦ୍ରୁମ ଚଉତିଶା

କବିକୁଳେଶ୍ୱର ଉପେନ୍ଦ୍ରଭଞ୍ଜଙ୍କ କୃତରେ କାବ୍ୟକଳାର ଯେଉଁ ଚରମୋତ୍କର୍ଷ ଦେଖିବାକୁ ମିଳେ ତାହାର ମୂଳ ଯେ ଉତ୍ତରାଧିକାର ସୂତ୍ରରେ ସେ ତାଙ୍କ ପିତୃ ପିତାମହାଦିଙ୍କ ଠାରୁ ପ୍ରାପ୍ତ ଏହା ନିଃସନ୍ଦେହ । ପିତାମହ ଧନଞ୍ଜୟଙ୍କ ରଘୁନାଥ ବିଳାସ ବୈଦେହୀଶ ବିଳାସର ଆଦର୍ଶ । କେଳିକଳ୍ପଦ୍ରୁମ ଚଉତିଶାର ରଚୟିତା ଓ ରଘୁଙ୍କ ଓପେନ୍ଦ୍ର କବିତାରେ ବନ୍ଧୁତ୍ୱରେ ଅତଏବ କେବଳ ସୌନ୍ଦର୍ଯ୍ୟାନ୍ୱିତ ହୋଇ ପ୍ରକାଶ ପାଇନାହିଁ କି ? ସୌନ୍ଦର୍ଯ୍ୟବୋଧ କେବଳ ଉପେନ୍ଦ୍ରଙ୍କର କାହିଁ ଅପର ମୂଳ ଯାହା ତାହା ଭଞ୍ଜବଂଶର ପ୍ରକୃଷ୍ଟାନୁକ୍ରମିକ କୋଠ ସମ୍ପତ୍ତି ।

ଦଶ—ଅଷାଢ଼ଶୁକ୍ଳ

କଞ୍ଜଲୋଚନ ଦୂତିକା ଆଗର ।
କ୍ରୋଧଭର ହୋଇ ବୋଲେ ଉତ୍ତର ।
କଳାକରମୁଖୀ ଆଗରେ କହ ।
କି କାର୍ଯ୍ୟେ ମୋର ଶ୍ରଦ୍ଧାଳୁ ସେନେହ ।
କେଳିକଳ୍ପଦ୍ରୁମ !
କନ୍ଦର୍ପ କଳାରେ ସେହୁ ଉତ୍ତମ । ୧ ।

ଖଟ୍ବାଙ୍ଗଧର ଅରି ତୀକ୍ଷ୍ଣ ଶର ।
ଖିନ୍ନ କରନ୍ତି ଯେ ମୋର ଶରୀର ।
ଖଗରାଜନାମୀ ମୋରେ ଦୟା କରୁ ।
ଖଳ ମୀନକେତୁମୁଖୁଁ ଉଦ୍ଧରୁ ।
ଝଟୁଥିବ ପାଣି ।
ଖୀନଉଦରୀ କି କହ ସନ୍ଦେଶ । ୨ ।

ଗଜଗମନୀ ସେ ବିପୁଳସ୍ତନୀ ।
ଗତ ସ୍ନେହ କି ନ ଚହ୍ନେ କାମିନୀ ।

ଗାଢ଼େ ଭୁଜେ ଭିଡ଼ ବୋଲୁଛୁ ଯାହା ।
ଗୋଷ୍ଠ ସମ୍ମୁଖୀ ପାସୋରିଲୁ କାହା ।
ଗୁଣ ଥାଇ ମୂର୍ଖ ।
ଗଲାର ହାର ମୋର ପ୍ରାଣସଖୀ । ୩ ।

ଘଟଣମୁଖୀର ଜଘନ ଦୂର ।
ଘେନ ମନ୍ତ୍ର କରି ଟାହା ଜପଇ ।
ଘଟଣା ଦେବାକୁ ଆନ ନ ଦଶି !
ଘେନ କହୁଛୁ ସେହୁ ଶୁଦ୍ଧ କେଶୀ ।
ଘନହାର ରସ ।
ଘନସ୍ତନୀର ବଶ୍ୟନେ ବରସ । ୪ ।

ନବ ଜଳଧର ଆଗେ ଚାତକ ।
ନ କରେ ଆନ ବାଞ୍ଛା ସ୍ନେହ ଲୋକ ।
ନବ କାମିନୀ ବିନୁ ମୋର ମନ ।
ନ କରେ ଆନ ରସରେ ଅଧ୍ୟାନ ।
ନିଷ୍ଠୁର ନ କର ।
ନଟକୁ ଭୟରୁ ବାରେ ଉଦ୍ଧର । ୫ ।

ଚଉଷଠିମଣି ଚନ୍ଦ୍ରମାଆନନୀ ।
ଚମ୍ପକଗାତ୍ରୀ ମୋ ହୃଦମଣ୍ଡନୀ ।
ଚାହିଁ କଟାକ୍ଷେ ଯାହା କହୁଅଛୁ ।
ଚଞ୍ଚଳ ଚିତ୍ତ ମୋ ବନୀ କରୁଛୁ ।
ଚାରୁ ପଦ୍ମଲାକ୍ଷା ।
ଚଉଷଠି ବିନୁ କେ କରିବ ରକ୍ଷା । ୬ ।

ଛୁଡ଼ ସନ୍ତ୍ରୀ ବଦନେ ମନ୍ଦ ହସି ।
ଛନ୍ଦିଲା ମୋର କଣ୍ଠେ ବାହୁ ଫାଶୀ ।
ଛୁରଦିନ୍ଦୁସ୍ଥିତା ରୂପେ ସମ୍ମାନ ।
ଛେଉର ଛଡ଼ାଇ କହିବ ଏମାନ ।
ଛଡ଼ଛୁ ସେ ସ୍ନେହ ।
ଛନ୍ଦ୍ମ.ଲୀମଣି ଅଟେ ଏହା କହ । ୭ ।

ଯୁବାଯୁବତୀଗଣ ଶିରୋମଣି ।
ଜଲଜନେତ୍ରୀ ଯୋଗୀନ୍ଦ୍ରମୋହିନୀ ।
ଯାଇ ଜଣାଅ ତାହାର ସମୀପ ।
ଜାଳା କଲା ଅଙ୍ଗେ କୁସୁମଚାପ ।
ଜାଣୁମନ୍ତି ଜାଣୁ ।
ଜଗମୋହିନୀ ଏହା ପରମାଣୁ । ୮ ।

ଝଲଆନନୀ ବେନ ପୀନ ସ୍ତନ ।
ଝୀନ ବାସ ପୃଷ୍ଠ ଦଶେ ଶୋଭନ ।
ଝାଉବାଜ କଟି ମଧରେ କାନ୍ତ ।
ଝଟକଚଞ୍ଚଳା ପ୍ରାୟେ ଦଶନ୍ତ ।
ଝଗଡ଼ା କରଇ ।
ଝଟକଦଳୀ ମୋତେ କରୁ ଦାହ । ୯ ।

ନବ ନାୟିକା ନୟନ ନ ଯାଇ
ନରଖି ଏଡ଼େ କଲା ପ୍ରାଣସଖୀ ।

ନେହ ପ୍ରତିମା ଅଟଇ ମୋହର ।
ନିମିଷେ ମନୁ ନୋହଇ ବାହାର ।
ନାଗଙ୍ଗରଞ୍ଜନ ।
ନବକେତକୀ ସେ ଶିର ଭୂଷଣ । ୧୦ ।

ଟମାଳ କର ସେ ଯାହା ବୋଇଲୁ ।
ଟୀକାକେ ଏବେ ତାହା ପାସୋରିଲୁ ।
ଟେକ କୁଚେ ହାର ଦେଲି ମୁଁ କର ।
ଟାଙ୍କୋରିଲା ପ୍ରେମ ଶସ୍ତ୍ରରେ ତାର ।
ଟାଣି କଟାକ୍ଷିତ ।
ଟେକ ପତ୍ରର ଏ ଅଟଇ ଟିକ । ୧୧ ।

ଠକ କଥା ମୋ ଆଗରେ କହୁଛ ।
ଠକ ପ୍ରତ୍ୟେକ କରୁଛ ମୃଗାକ୍ଷି ।
ଠାକୁରାଣୀ ପଣ ଜାଣିମା ତାର ।
ଠିକେ କହୁ ବସ ଦୋଷ ମୋହର ।
ଠଣମୁଖୀ ଆଗେ ।
ଠିକେ ମଣାଇ କହ ସଖୀ ବେଗେ । ୧୨ ।

ଡାଳିମ୍ବବୀଜଦଶନୀ କୋପକୁ ।
ଡରିଁ ଅଛି ବାରେ ରଖୁ ଦାସକୁ ।
ଡୋଳେ ଶୃଙ୍ଗିଣ ଯାହା କହୁଅଛି ।
ଡଙ୍କର କାମ ଆଗରେ ଦେଉଛି ।
ଡୋଳା ପିଉଲୀକ ।
ଡାକ କହୁରୁ ଏହା କରନ୍ତିକି । ୧୩ ।

ତମାଳ କର ଯେ ଯାହା ବୋଇଲା ।
ତାଳ ଶୃଙ୍ଗାଣୀରେ ମନ ମୋହିଲା ।
ତଳ ପଡ଼ିଲା ମୀନକେତୁ ଶରେ ।
ତାଳ ଚୁମ୍ବନ ଦେଲା ମୋ ଗଣ୍ଡରେ ।
ତାଳେ ପାଶୋରିଲା ।
ତଗ ପସରି ପ୍ରାପ୍ତେ ପ୍ରିୟା କଲା । ୧୪ ।

ଏବେ ନଷ୍ଟେ ତୋତେ କହୁଛି ସହି !
ଏଣୀନୟନୀ ବନ୍ଧୁ ସାହା ନାହିଁ ।
ଏଣାଙ୍କମୁଖୀ ଏହା ଜାଣି ଥାଉ ।
ଅଣକାର୍ଯ୍ୟେ ଜୀବନକୁ ନ ନେଉ ।
ଅଣଅପରାଧୀ ।
ଅନଙ୍ଗ ଶପ୍ତେର ହୋଇଲା ବାଧୀ । ୧୫ ।

ତରୁଣୀ ରତନ ମୋ ପ୍ରାଣମଣି ।
ତ୍ରୈଲୋକ୍ୟ ମୋହିନୀ ହେମବରଣୀ ।
ତନୁ ଛୁଆଇଁ କହୁଛି ନିଶ୍ଚିତ ।
ତୁମ୍ଭ ମନରେ ଥିବ ପ୍ରାଣନାଥ ।
ତା ହୃଦେ ଧରୁଛି ।
ତୁରିତେ ତା ବିସୋରିଲା ମୃଗାକ୍ଷି । ୧୬ ।

ଥିର ଗାମିନୀର ନିତମ୍ବ ଦୁଇ ।
ଥାଣ୍ଡୁଅଇର ସିଂହାସନ ସେହି ।
ଥିଲା ତହିଁପରେ ଚୀନ ବସନ ।
ଥୋଉ ମଦନର ଜୟ କେତନ ।

ଥିବ ତାର ପାଶ ।
ଆନ ଦେଇ ରଖ ମୁଁ ତାର ଦାସ । ୧୭ ।

ଦୟାଉଦଧି ମୋ ଦମ୍ଭନାଶିନୀ ।
ଦାସର ଦୋଷ କି ଘେନଇ ପୁଣି ।
ଦଶନେ ଅଧର ଗୃପି ମୋହର ।
ଦରଦ୍ର-ନାଥ କହୁଛି ଉତ୍ତର ।
ଦୋଷ ମୋ ନ ଧରୁ ।
ଦନନାଥବନ୍ଧୁ-ମୁଖୀ ଉଦ୍ଧରୁ । ୧୮ ।

ଧୀର ଗାମିନୀ ଅଗ୍ରତରେ ଯାଇ ।
ଧୀରେ କହୁରୁ ବଚନ ମଣାଇ ।
ଧରୁଛି କୁସୁମ-କାର୍ମୁକ ମାର ।
ଧଇର୍ଯ୍ୟ ମୋର ନାହିଁବ ପାମର ।
ଧନମଣି ପାଦ ।
ଧରୁଛି ଶିରେ କର ପରସାଦ । ୧୯ ।

ନାରୀଶ ମୋରେ କଲ୍ପ ପ୍ରାଣସଖୀ ।
ନର୍ଦ୍ଦୟା ହୃଦ ଛନ୍ତି ଚନ୍ଦ୍ର ମୁଖୀ ।
ନାକ ନାଗ ନାସା ନୋହେନ୍ତ ସମ ।
ନାଗ୍ଭଶିରୋମଣି ମୋ ଜୀବ ଧାମ ।
ନାହିଁ ସମ ସର ।
ନାରୀଶ କି ଧୀ କହୁଛି ଚତୁରୀ । ୨୦ ।

ପଲ୍ଲବ-ପ୍ରୀତ ଯେତେ କରଥିଲ୍ଲ ।
ପରମ ବନ୍ଧୁ ତାହା ପାଶୋରଲ୍ଲ ।

ପିକ ବଚନୀକି କହୁଛ ମୁହିଁ ।
ପ୍ରସନ୍ନ ବଦନେ ଚୁମ୍ବନ ଦେଇ ।
ପେଶୁନ ମଦନ ।
ପଞ୍ଚଶର ଘେନି କରେ ଦହନ । ୨୧ ।

ଫାଇ କୋପ କଁପା ଯୁବତୀ କନ୍ଧ ।
ଫୁରୁଣା ଯେତେ ମୋ ସବୁ ଲାଗିଲା ।
ଫଳେ ତ ଜାଣିଲି ତାର ପୀରତି ।
ଫେଡ଼ି କହିଲ ତୋହୋର ଭକତି ।
ଫେଡ଼ୁ ମନୁ ତାପ ।
ଫାନ୍ଦେ ପକାଇଛୁ ମଦନ-ଭୂପ । ୨୨ ।

ବସନ୍ତ କାଳରେ ସନ୍ଧ୍ୟାବେଳରେ ।
ବସିଥିଲି ବନ୍ଧୁ ମୋର କୋଳରେ ।
ବୋଲୁଛ ପ୍ରିୟା ମୋତେ ହସି ଯାହା ।
ବ୍ୟର୍ଥ କପାଇଁ କଣ୍ଟକ ତାହା ।
ବଧୂବଦନାବ୍ଜ ।
ବୋଲିବୁ ସେକଥା ଉଚିତ କି କ । ୨୩ ।

ଭରସା ମୁହିଁ ବଡ଼ କରିଥିଲି ।
ଭାବିନୀ-ବ୍ରତ ସମ୍ଭୂ ପ୍ରାୟେ ବୋଲି ।
ଭାଙ୍ଗିଲ ଜଳଧି କଲ୍ପ ନିର୍ଘୋଷ ।
ଭବ୍ୟଜନେ କି ପ୍ରଭୁ କରେ ଦୋଷ ।
ଭାସିଲି ସାଗରେ ।
ଭେଲା ଉରଜକୁମ୍ଭ ଦେଉ ମୋରେ । ୨୪ ।

ମୋହୋରେ ମାନ କରନ୍ତୁ କପାଇଁ ।
ମୋତେ କୋକିଳବଚନ ନ କହ ।
ମନ ଦହିଣ ଯେବେ ସେ କହିବ ।
ମଦନ ସ୍ୱପ୍ନେ ଦୁଖୁ ଉଦ୍ଭବିବ ।
ମଦଘାସି ମୋର ।
ମାଣିକମାଳା ସେ କଣ୍ଠତଟର । ୧୫ ।

ଯେବେ ଦୋଷ ମୁହିଁ କଲି ତାହାରେ ।
ଜାଣୁମଣି ଦଣ୍ଡ ଦେଉ ମୋହୋରେ ।
ଜଗତେ ଏ କଥା ରହିଣ ଥାଉ ।
ଜଳଜାକ୍ଷି ଲାଗି ଜୀବନ ଯାଉ ।
ଯେବେ ନ ବୁଝିବ ।
ଯେତେ କହିଲେ ସେ କିସ ହୋଇବ । ୧୬ ।

ରମଣୀମଣି ରତିରସ ଦେଇ ।
ରଖି ପ୍ରେମଦାନ ଦେଇଣ ସହି ।
ରଖିବ ଯେବେ ଯେହ୍ନେ ସେ ରଖିବ ।
ରଖନ୍ତା ତା ବିନୁ ଆନ ନୋହିବ ।
ରସିକନୀ ମୋର ।
ରମ୍ଭକଳା ରାମା ଗୁଣ ଗମ୍ଭୀର । ୧୭ ।

ଲହ୍ନିଲବସ୍ତ୍ରସ ଦିନୁ ତାହାର ।
ଲଭାଏ ପାଶୁଁ ନୋହିଲି ଅନ୍ତର ।
ଲାବଣ୍ୟନିଧି ଲଳିତ ବଚନୀ ।
ଲେଖିଥିଲା ପଦ ଅନୁରାଗିଣୀ ।

ଲବଙ୍ଗିକା ଆଗେ ।
ଲଳନାବର କହିଲା ସରାଗେ । ୨୮ ।

ବିଳମ୍ବ ନ କର ଚଳ ବହନ ।
ବନଜବଦନୀ ମୋ ପ୍ରାଣଧନ ।
ବିଧାତା ବଶୁଁ ପ୍ରେମଜ୍ଞ ହୋଇଲା ।
ବେଳକୁ ବେଳ ସେ ନିରାଶ କଲା ।
ବିନୟୀ ହୋଉଛି ।
ବାରେ ଦୟା ମୋତେ କରୁ ମୃଗାକ୍ଷି । ୨୯ ।

ସଦନ ହୋଇ ଘନ ପରବେଶ ।
ସରୋଜନେତ୍ରୀ ଦେଖିଣ ବିରସ ।
ଶମ୍ବର-ଶର ଭୟରୁ କର ।
ସରାଗେ କୋଳେ ବସିଲା ସୁନାସା ।
ଶୀତଳ ବଚନ ।
ସେ କଥା ରମଣୀ ନ ଭୁଲେ ମନ । ୩୦ ।

ଶ୍ୟାମସୁନ୍ଦରର ସନ୍ଦେଶ ପାଇ ।
ଶୀଘ୍ରେ ଦୂତୀ ସଖୀ ପାଶେ ମିଳଇ ।
ସରୋଜପତ୍ର କୁଟୀର ମଧ୍ୟରେ ।
ସ୍ମିତହାସିନୀ ବସିଛି କ୍ରୋଧରେ
ସହଚରୀ ଯାଇ ।
ସରୋଜନେତ୍ର ବାରତା କହଇ । ୩୧ ।

ଶମ୍ବର ତାତ ତୋତେ ବହୁଛି ।
ଶୀର୍ଣ୍ଣ ତା ଅଙ୍ଗ ହେଲା ପ୍ରାଣସଖି !

ଶଶୀପ୍ରେକ ରେଖା ଜାଣି ତା ଅଙ୍ଗ ।
ସେନେହ ଥିଲେ ଦଥ ରତିରଙ୍ଗ ।
ଶଶୀମୁଖି ହସି ।
ସାରଙ୍ଗଧରଙ୍କୁ ଅଣ ସୁକେଶୀ । ୩୨ ।

ହଂସଗାମିନୀ ହୃଷ୍ଟ ବାଣୀ ଶୁଣି ।
ହରିଙ୍କି ବେଗେ ଆଣିଲା ତରୁଣୀ ।
ହିମାଂଶୁମୁଖୀ ସନ୍ନିଧେ ପ୍ରବେଶ ।
ହୃଦତାପ ଖଣ୍ଡି ହେଲେ ହରଷ ।
ହରିଣାକ୍ଷି ହର ।
ହେଲେ ରତିରଣେ ଏ ବେନି ସର । ୩୩ ।

କ୍ଷଣନ୍ତେ ରାଧାକୃଷ୍ଣ କଲେ ରସ ।
ଖଣ୍ଡି ସୁରତ ସେ ହେଲେ ହରଷ ।
କ୍ଷୀରଦଧିକନ୍ୟାପତିଚରଣେ ।
ନୃପ ଧନଞ୍ଜୟ ପଶେ ଶରଣ ।
କ୍ଷମା ଦୋଷ କର ।
କ୍ଷମିଲା ଏ ରସ ଦୋଷ ନ ଧର । ୩୪ ।

# ପ୍ରେମଚିନ୍ତାମଣି ଚଉତିଶା

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବହୁ ବୈଷ୍ଣବକାବ୍ୟକବିତାର ରଚୟିତା । ତଥିବତାରେ, ରସିକୋଚିତ ଭାବର ଲଳିତ ଅଭିବ୍ୟକ୍ତିରେ ବଳଦେବ କବିସୂର୍ଯ୍ୟ ବ୍ରହ୍ମା ମଧ୍ୟ ତାଙ୍କର ସମକକ୍ଷ ହେବେ କି ନାହିଁ ସନ୍ଦେହ । ସଦାନନ୍ଦ ଅଭିମନ୍ୟୁ-ସାମନ୍ତସିଂହାରଙ୍କ ଗୁରୁ:—ଏତିକି ଛଡ଼ା ତାଙ୍କର ଅଧିକ ବିଶେଷ ପରିଚୟ ଅନାବଶ୍ୟକ । ପ୍ରେମଚିନ୍ତାମଣି ଚଉତିଶାର ରମଣୀୟ କାନ୍ତ ପଦାବଳୀ ଯେଉଁ ପ୍ରଚୁର ବହୁବିଳାଶ ଉଜ୍ଜ୍ୱଳ ଏ ପର୍ଯ୍ୟନ୍ତ ତାର ଯଥାଯୁକ୍ତ ପୂଜା କରିନାହିଁ । କାରଣ ସଦାନନ୍ଦଙ୍କର ଅନେକ କାବ୍ୟ କବିତା ଏ ପର୍ଯ୍ୟନ୍ତ ଅନାବିଷ୍କୃତ ନ ହେଲେହେଁ ଅପ୍ରକାଶିତ ।

କହଇ ନାଗରୀ-ବର
କରି ସଜନୀ ଆଗର
କାଢିଲୁ ଓଢ଼ଣା    ହୋଇଲୁ ବାହାର
ଶ୍ୟାମବନ୍ଧୁ ହୋଉ ମୋର । ୧ ।

ଖଳଙ୍କୁ ନାହିଁ ମୋ ଡର
ଖଞ୍ଜିବି ଚରଣେ ତାର
ଖସିଲା ଖପଣି    ଶର କି ରହଇ
ମୋ ମନ ହେଲାଣି ତାର । ୨ ।

ଗ୍ୟାନ ଧ୍ୟାନ ସବୁ ମୋର
ଗୋବିନ୍ଦ ନନ୍ଦକିଶୋର
ଗୁପତେ ହିନା ମୁଁ    ତୋତେ କହୁଅଛୁ
ପାପକୁ ନାହିଁ ମୋ ଡର । ୩ ।

ଘେନିଥା ମନରେ ଏତେ
ଘୋର ବିଜନ ବନସ୍ତେ
ଘନଶ୍ୟାମ ଚନ୍ଦ୍ର-    ମୁଖ ଦେଖୁଥିଲେ
ବୈକୁଣ୍ଠ ଛାର ବା କେତେ । ୪ ।

ନିଷ୍ଠା ଏହି କଥା ମୋର
ନ ଯାଇ ନଷ୍ଟ ନାଗର
ନାରାୟଣ ପୁଣ୍ଡେ ବାସ ନ ଯୋଗାଇ
ନରକେ ପଡ଼ିବା ସାର । ୫ ।

ଚୂର୍ଣ୍ଣ କୁନ୍ତଳ ଅଳୃତ
ଚନ୍ଦ୍ର ବଦନ ମୋ କାନ୍ତ
ଚଉଦ ବ୍ରହ୍ମାଣ୍ଡ ଲୋକ ଛଡ଼ାଇଲେ
ଛାଡ଼ି ନ ପାରେ ମୋ ଚିତ୍ତ । ୬ ।

ଛଇଲ ଛବି ଛଟକ
ଛଡ଼ାଇ ଦେଲା ବିବେକ
ଛନ ଛନ ହୋଏ ମନ ଅବିଛନ
ହୃଦ ହୁଏ ଦକ ଦକ । ୭ ।

ଜଗମୋହନୀ ମନ୍ତ୍ରର
ଜାଣନ୍ତି ମୁରଲୀଧର
ଯା ଗୀତରେ ଦ୍ରବ ପାଷାଣ ହୋଅଇ
ପାଣି ହେବ କି ପଥର । ୮ ।

ଝଟିଛି ପ୍ରଲ୍ଲବେ ତରୁ
ଝଟିଛି ପଲ୍ଲବେ ଦାରୁ
ଝାମ ଯାଇ ଉଡ଼ି- ଗଲା ପକ୍ଷୀ ପଡ଼େ
କି ଛାର ଅବଳା ଭୀରୁ । ୯ ।

ନିବର୍ତ୍ତି ଉ ପରି ମୋତେ
ମୁଁ ଏବେ କହୁଛି ତୋତେ

ଝଡ଼ ମନକୁ ତୁ          ତୋହର ପଣ୍ଟୁର
ଝ ହୁଅଇ ବଂଶୀ ଗୀତରେ । ୧୦ ।

ଟଳଇ ମେରୁ ମନ୍ଦର
ଟଳବଳ ବାଣୀ ମୋର
ଟମକ ନିଶାଣ          ବାଜେ ତ୍ରିଭୁବନ
ରାଧା ହେଲେଣି କୃଷ୍ଣରା  ୧୧ ।

ଠୂଳ ପୁରୁଷ ଉତ୍ତମ
ଠିକେ ରହିକ ସ୍ୱପ୍ନେ ନାମ
ଠିକେ ସଦାନନ୍ଦ          କଣ୍ଠ ମୂର୍ଦ୍ଧ ବ୍ରହ୍ମା
ଲଭ ହେବ ପୂର୍ଣ୍ଣକାମ । ୧୨ ।

ଡୋଳା ଲଲାଟରେ ଖୋସି
ଡାକେ ମୁଖ ଦେଇ ବଂଶୀ
ଡରଲ ପର୍ବତପ୍ରେ          ମିଟ୍ଟେ  ବୋଲୁଥାଇ
ରଖ ମନ ଇଷି ଭ୍ରିଷି । ୧୩ ।

ଢଳ ଢଳ ଗ୍ଲୁଥାଇ
ଢାଳ ଢାଳ ଗୁହୁଁଥାଇ
ଢମ ପଣ ଛାଡ଼          ଏହୁ ଦେନ ଦିନା
ଯ୍ୟା ପଛେ ହୋଇନ ବାଇ । ୧୪ ।

ଅଳପ ନୋହେ ତା ବେଶ
ଆଖି-ପକ୍ଷୀ ଅଠା-ରସ
ଅନୁରାଗୀ ଲୋକ          ଛାଡ଼ ପାରଇଛ
ଭୁଲ ଯାଉ ପଛେ ନାଶ । ୧୫ ।

ତମାଲ ନୀଳ କୁନ୍ତଳ
ତଥି ବନ୍ଧା ବାଙ୍କ ଚୂଳ
ତହିଁ ମୟୂର ଚନ୍ଦ୍ରିକା        ନାମ୍ରତାର
ମଣ୍ଡଣି କୁସୁମମାଳ । ୧୬ ।

ଯୋଉଥା ଗଣ୍ଡି ବସନେ
ଥିଲେ ଦେଖିବୁ ନୟନେ
ଥିବ ଦେଖି କେହୁ        ଭୁଲେ ବ୍ରଜବାଳୀ
ଜାଣିବୁ ଅଲପ ବଚନେ । ୧୭ ।

ଦଶେ ଅଲକା ମଣ୍ଡଳ
ଦବ୍ୟ ଗୋଧ ପନ୍ତି ମେଳ
ଦୁଇ ପାଖ ଯେନ        ଯାଡ଼ି ଧାଡ଼ି କଥା—
ପନ୍ଥ ଦଏ ଧୈର୍ଯ୍ୟ ହାଳ । ୧୮ ।

ଧନ୍ୟ ତା ଚନ୍ଦନପାନ୍ତି
ଧୈର୍ଯ୍ୟ ହରୁ ଦଏ କାନ୍ତି
ଧରିବ କେ ଦେହ        ତାକୁ ନ ଦେଖିଲେ
ହୃଷ୍ଟ ହୋଏ ଯୁଗ କୋଟି । ୧୯ ।

ନାଗରୀ ଗର୍ବ ଗଞ୍ଜନ
ନୟନେ ସରୁ ଅଞ୍ଜନ
ନୃଥ ନୃଥ ବାଙ୍କ        ଶୃଦାଣୀ ତହିଁରେ
କି ସେ ନାଚୁଥି ଖଞ୍ଜନ । ୨୦ ।

ପର ପାଇଁ ଦେଲ ପ୍ରାଣ
ପତାକା ବାନ୍ଧିଲ ଜାଣି

ପୁରୁଣା ପ୍ରୀତିସ୍ପୃହା ଥିଲେକ ପଶ୍ଚର
ପ୍ରୀତିର କେତେ ଲକ୍ଷଣ । ୨୧ ।

ଫନ୍ଦା ମୁ କଲି ତାହାକୁ
ଫେଡ଼ି କହିଲି ମନକୁ
ଫିଟି ପଡ଼ିଲା ନିଜ ଧନ ପାଣିରେ
ଫୋଟେ କାମଶର ବୁକୁ । ୨୨ ।

ବିମ୍ବାଧରେ ମନ୍ଦ ହାସ
ବକ୍ଷସ୍ଥଳ ଶୋଭା-ଦେଶ
ବୁଗୁଲାଙ୍କ (?) ମାରଣା ତା ଅକ୍ଷି
ମନ ଲୁଟିକଲେ ରସ । ୨୩ ।

ଭୁଜ ମର୍କତ ବଲ୍ଲରୀ
ଭୁବନ ମଙ୍ଗଳକାରୀ
ଭଣେ କବିସୂର୍ଯ୍ୟ ସେ ବନ୍ଧା ପାଇବେ
କଲେ ରାଧା ଶୋଭା ଶ୍ରେୟ । ୨୪ ।

ମନା କରୁ ପରା ମୋତେ
ମୁ ଏବେ କହୁଛି ତୋତେ
ମୋହନଚନ୍ଦ୍ରଙ୍କୁ ମୁରୁଛି ମନ୍ତ୍ରକୁ
କେ ଜାଣେ କହ ଜଗତେ । ୨୫ ।

ଜୀବନବନ୍ଧୁ କାଳିଆ
ଯମୁନାଛଳକଳିଆ
ଲାଗି ବହିଥାଇ ମୋ ଭେଟ ପାଇଁକି
ଦେଖି ଚମକେ ମୋ ହିଆ । ୨୬ ।

ରତନ ହାର କଙ୍କଣ
ରବି କିରଣୁ ଦ୍ୱିଗୁଣ
ରହି ତା ଶ୍ରୀ ଅଙ୍ଗେ ଶୋଭା ରଙ୍ଗ ପାଦ
ତଥକୁ ଶୋଭା ପାଇଣ । ୨୭ ।

ଲାବଣ୍ୟ ଶ୍ରୀ ଅଙ୍ଗ ତାର
ଲାଗି ତହିଁ ପୀତାମ୍ବର
ଲଳନା ମନମତ୍ତ କଷ୍ଟ ପଡ଼ନ୍ତି
ଲଭ ଶୋପରେ ତାହାର । ୨୮ ।

ବିଚିତ୍ର ପାହୁଡ ପାଦେ
ବାଜେଣୀ ନୂପୁର ନାଦେ
ବଣାହୋଇ ମୋର ବିବେକ ତଡ଼ାଇ
ହୁରୁଡ଼ଗଲେ ବିଷାଦେ । ୨୯ ।

ଶରଣ ଗଲୁ ପ୍ରମାଣ
ଶ୍ୟାମବନ୍ଧୁ ଶ୍ରୀଚରଣ
ସେ ଯେବେ ଛାଡ଼ିବେ ମୁଁ ଯେ ନ ଛାଡ଼ଇ
ସେ ବିନା କେ ପରିତ୍ରାଣ । ୩୦ ।

ସେ ଦିନେ ଯେତେ ମୋ ଦୋଷ
ସେ କ୍ଷମା ହେବ ଅବଶ୍ୟ
ସର୍ବ ଗର୍ବ ଖର୍ବ ହୋଇଲା ମୋହର
ଛାଡ଼ିଲିଣି ସବୁ ଆଶ । ୩୧ ।

ସବୁକାଳରେ ମୁଁ ତାର
ସେହି ପ୍ରାଣନାଥ ମୋର

ଶୁଦ୍ଧେ ଥିଲୁ ରୁଚି     କହି ଗଲେ ପଣ୍ଡି
ମୁଁ ଯେ ଈଶ୍ୱର ଈଶ୍ୱର । ୩୨ ।

ହୋଉ ନୋହୁ ଭଗବାନ
ହେଲେ ଅଧିକ ନନ୍ଦନ
ହରଣୀଙ୍କ ବନା     ଗୃହକାର ଗଣ
କାହିଁକୁ ଯେ ମୋତେ ସ୍ଥାନ । ୩୩ ।

ଯେତେ ରସିକର ରସ
ଯିଏରେ ହୋଇ ପ୍ରକାଶ
ଖ୍ୟାତ ପ୍ରେମ ଚନ୍ଦ୍ରା—     ମଣି ଗୀତ ନାମ
ମୁଁ ସାଧୁଚରଣ ଦାସ । ୩୪ ।



# ଦୂତୀ ଚଉତିଶା

ଶ୍ରୀଚୈତନ୍ୟଙ୍କ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ଜଗମୋହନ ରାମାୟଣକାର ବଳରାମ ଦାସଙ୍କର ଓଡ଼ିଶା କାବ୍ୟ ସାହିତ୍ୟରେ ସ୍ଥାନ ଅତି ଉଚ୍ଚ । ତାଙ୍କ କୃତ କେତେକ ଗ୍ରନ୍ଥ ଯଥା ଲକ୍ଷ୍ମୀପୁରାଣ ଆବାଳ ବୃଦ୍ଧବନିତାଙ୍କ କଣ୍ଠହାର । ଦୂତୀ ଚଉତିଶା ଗ୍ରନ୍ଥମଧ୍ୟରୁ ଅନ୍ୟତମ । ଏହାର ଶେଷ କେତେକ ପଦ ଆମ୍ଭେ ଏ ପର୍ଯ୍ୟନ୍ତ ପାଇନାହୁଁ ।

କହେ ରାଇ ଦୂତି ! ଶୁଣ ବିଚଣି
କଦମ୍ବମୂଳରେ ମୁରଲୀପାଣି
ଦୂତି ଗୋ !
କାହୁଁ କେତେ ସୁନ୍ଦର
କୃଷ୍ଣ କଳ୍ପତରୁ ନବ ଅଙ୍କୁର । ୧ ।
ଖୀନ ନାଳ ପରେ କି ଭଙ୍ଗୀଠାଣି
ଖଞ୍ଜନନେତ୍ର ତା ବାଙ୍କ ଗ୍ରୀବାଣୀ
ଦୂତି ଗୋ !
ଖେଦ ବଳଇ ମୋର
ଖରେ ବାନ୍ଧୁଅଛି ମଦନ ଶର । ୨ ।
ଗୋପୀ ଗୋପାଳ ଗୋବତ୍ସ ସହିତେ
ଗୋଷ୍ଠବାଟ ପର ଲାଗୁଛି ମୋତେ
ଦୂତି ଗୋ !
ଗ୍ୟାନ ହାରଇ ମୋର
ଗୋବିନ୍ଦଙ୍କୁ ଦେଖି ଚିତ୍ତ ଅସ୍ଥିର । ୩ ।

ଘନ ଶ୍ୟାମଳଅ ନନ୍ଦର କାହ୍ନୁ
ଘନଘନ କର ବଜାନ୍ତି ବେଣୁ
ଦୂତି ଗୋ !
ଘରେ ନ ରହେ ଚିତ୍ତ
ଘନ ଶ୍ୟାମଳଅ ବାଇ କଲେ ତ । ୪ ।

ଙଲଠ କଦମ୍ବ ମୂଳେ ବ୍ରଜପ୍ରେ
ଙଛାର ମୁରଲୀ ଭ ରଙ୍ଗେ ବାଯ୍ରେ
ଦୂତି ଗୋ !
ଅଙ୍ଗ ଲାବଣ୍ୟ ବାଣୀ
ଅବଳା ଗଣ ସ୍ନେହପାଶେ ଙ୍କଣି । ୫ ।

ଚତାକୁ ଦେଖିଣ ଚିତ୍ତ ଅସ୍ଥିର
ଚେତନା ହଜନ୍ତି ସହଜ ଘର
ଦୂତି ଗୋ !
ଚନ୍ଦ୍ର ନେତ୍ରପ୍ରତିମା
ଚତୁର୍ଘ-ଚିତ୍ତ-କୁମୁଦ-ଚନ୍ଦ୍ରମା । ୬ ।

ଛଡ଼ା ଚକ୍ର ପରେ ଛଇଲ ବର
ଛଛନ୍ଦେ ହୋଇଛନ୍ତି ଘଇ ଆକାର
ଦୂତି ଗୋ !
ଛନ୍ଦ ମୁରଲୀ ସେନା
ଛନ୍ଦ ଭଙ୍ଗରେ ଅବାଡ଼ ପ୍ରତିମା । ୭ ।

ଜଗତ ଜୀବନ ଯଶୋଦା ନନ୍ଦ
ଯୁବା ଯୁବତୀଙ୍କ ମୋହନ ଫାନ୍ଦ

ଦୂତି ଗୋ !
ଯିବା ଆସିବା ହେଲ
ନିଷ୍କଳଙ୍କ ମୋ ସରଣ ନିଜ । ୮ ।

ଝରଣିଖେ ହର ହେଲେ ପ୍ରସନ୍ନ
ଝାସି ସୁଧାସିନ୍ଧୁ କର ଦର୍ଶନ
ଦୂତି ଗୋ !
ଝଟ ଝଟ ଶ୍ରୀମୁଖ
ଝାସି ସୁଧାସିନ୍ଧୁ ଲଭିବା ସୁଖ । ୯ ।

ନବଘନ ତନୁ ଶ୍ୟାମଳ ସାଜେ
ନୀପ ବଟମୂଳେ କରନ୍ତୁ ବିଜେ
ଦୂତି ଗୋ !
ନବ ନବ ମୂରତି
ନବ ଅନୁରାଗେ ବଳାଅ ମତି । ୧୦ ।

ଟେକି ବାନ୍ଧିଥାନ୍ତି ମୋହନ ଚୂଳ
ଟାକ ପତିବ୍ରତା ହୋଇବେ ଭୋଳ
ଦୂତି ଗୋ !
ଟାଣ ରହିବ ନାହିଁ
ଟେକି ଟାଣେ ବାନ୍ଧ ତ୍ରିବେଣୀ ନଈ । ୧୧ ।

ଠୁଲଶୂନ୍ୟ ପରେ ନିତ୍ୟ ବିଳାସ
ଠିକେ ରାଧା ଦୂତୀ ସେ ପାଦେ ରସ
ଦୂତି ଗୋ !
ଠିକେ ଗୁରୁ ରାଧିକା
ଠିକେ ବଳରାମ ଭାବେ ଦୂତିକା । ୧୨ ।

ଡାକ ପ୍ରାଣଧନ କହୁଛି ତୋତେ
ଡୋଳାକୁ ଡୋଳା ମନ୍ଥାଅ ଭୁରୁଟେ
ଦୂତ ଗୋ !
ଡାକେ ମୁରଲୀ ତାର
ଡେର ଶ୍ରୁତିପଥେ ଶବଦ ବାର । ୧୩ ।

ଢେଉକୁ ନିଶ୍ଚଳ କର ତୁ ମନ
ଢଳଢଳ ଦିଶେ ବଂଶୀ ବଦନ
ଦୂତ ଗୋ !
ଢାଳେ ମୁରୁଛି ନୋହି
ଢି କରିଅଛି କଳା କହ୍ନାଇ । ୧୪ ।

ଅଣସର ଘରେ ଗଙ୍ଗା ଯମୁନା
ଅନୁପମ ଜଳ ଢାଳେ ମିଶାନା
ଦୂତ ଗୋ !
ଅନୁସର ଭାବନା
ଅପୂର୍ବ ସୁନ୍ଦର ନନ୍ଦର କହ୍ନା । ୧୫ ।

ତାଳୁ ଉପରେ ଦେଖ ତ୍ରିଭଙ୍ଗୀ ତୂଳ
ତରୁଣ ଅରୁଣ ଚରଣ ତଳ
ଦୂତ ଗୋ !
ତ୍ରିଭଙ୍ଗିମା ତା ଠାଣି
ତରଳ ଦେଖି ସେ ନବକାମିନୀ । ୧୬ ।

ଥିରେ ବଂଶୀଧ୍ୱନି ପାଇଲେ ଥିଟ
ଥୁମ୍ପୁଳ ମୋହନ ବସି ଉଠାଇ

ଦୂତ ଗୋ !
ଥୟ ନୋହଇ ଚିତ୍ତ
ଥୋଇଲ୍ଲ ଧନ ପାସୋରିଛୁ ମୁଁ ତ । ୧୭ ।

ଦୟା ଧର୍ମ ସତ ଶାନ୍ତି କ୍ଷ ଘେନ
ଦୟାନିଧି ପାଶେ ମଜ୍ଜାଅ ମନ
ଦୂତ ଗୋ !
ଦେଖି ଦିବ୍ୟ ମୂରତି
ଦେବା ଦେଖି ହବ ଶ୍ରୀକୃଷ୍ଣ ମୂର୍ତ୍ତି । ୧୮ ।

ଧନ ଯଉବନ ନୋହଇ ଚିର
ଧରଣୀ ମଧ୍ୟେ କୃଷ୍ଣଭକ୍ତି ସାର
ଦୂତ ଗୋ !
ଧ୍ରୁବ ଏ ବାକ୍ୟ ଦିନା
ଧନ୍ୟ ବ୍ରଜଭୂମି ପୂର୍ବ ବାସନା । ୧୯ ।

ନବଘନ ନୂଆ ପୀରତି ଭାବ
ନବ ପଞ୍ଚପୁରେ ଅଛି ଦୁର୍ଲଭ
ଦୂତ ଗୋ !
ନବନବ ମୂରତି
ନବ ଅନୁରାଗେ ବଳାଅ ମତି । ୨୦ ।

ପରମ ପୀୟୂଷ ଖାଇଣ ଭୋଳା
ପର ପୀରତିରେ ପରମ ମିଳା
ଦୂତ ଗୋ !
ପର ରଜ ବଶ୍ୟର
ପୀରତି କରିତ ସଂସାରେ ସାର । ୨୧ ।

ଫୁଲ ଚଢ଼ି ପ୍ରୀତ କର ଗୋ ସହ !
ଫୁଲମକରନ୍ଦେ ଭ୍ରମର ବାଇ
ଦୂତ ଗୋ !
ଫୁଲ ମଧ୍ୟରେ ବାସ
ଫୁଲମାଳଅ ପାଦେ କର ଅଶ । ୨୨ ।

ବାର ବାର କର କହୁଛ ସହ !
ବାର ବାର ବାରେ ରଖ ଭୁ ନେଇ
ଦୂତୀ ଗୋ
ବାର ସଙ୍ଗତେ ଗୃହ
ବଂଶୀଧରଙ୍କୁ ଭାବେ ବଶ କର । ୨୩ ।

ଭାବରେ ବଶ ସେ ଭାବରେ ବାଇ
ଭୃଙ୍ଗ ଯେଷ୍ଠେ ମଧୁପାନ ଚୁମ୍ବଇ
ଦୂତ ଗୋ !
ଭାବ ନେହ ପଥକୁ
ଭବେ ବଲରାମ ଜୀବ ତାହାକୁ । ୨୪ ।

ମନେ ମନ କଇ ମଣ୍ଡାଅ ମନ
ମନ ପୀରତିରେ ମନମୋହନ
ଦୂତ ଗୋ !
ମନେ ମନ ମଣ୍ଡାଅ
ମନ ମାନହିଁକେ ସେବା ଲଗାଅ । ୨୫ ।

ଯମୁନାକୂଳେ ବଂଶୀ ବଟ ମୂଳେ
ଜାତି କୁସୁମ ନକୁଞ୍ଜ ବନରେ

ଦୂତୀ ଗୋ !
ଛପ ଲମ୍ପ ସନ୍ଧରେ
ଜାଟି ଭେଟ ତାଲୁ ଜ୍ୟୋତ୍ସ୍ନା ଉଲରେ । ୧୬ ।

ରସେ ରସିକ ରସ ଖାଇ ଭୋଳ
ରସ ଅଟେ ଯୋଗ ନୃଦଙ୍ଗ ତାଲ
ଦୂତୀ ଗୋ !
ରସ କଲ୍ପଭୁକରେ
ରସବତୀ ବେଢ଼ି କୃଷ୍ଣ ପାଶରେ । ୧୭ ।

ଲଳିତା ବିଶାଖା ରଚି ଅବେଶେ
ଲମ୍ଫାଙ୍ଗ ଲୀଳାଙ୍ଗ ଭୋଗାଙ୍ଗରେ ସେ
ଦୂତୀ ଗୋ !
ଲୀଳା ଲାବଣ୍ୟନିଧି
ଲମ୍ଫିଙ୍ଗେ ସାଧିଲେ ଲୀଳାଙ୍ଗେ ସିଦ୍ଧି । ୧୮ ।

ବ୍ରଜରାଜସୁତ ସଙ୍ଗେ ବିଳସି
ବାମଭ୍ରୂ ତ ବାମା କ ଗୋଷ୍ଠୀ ଦର୍ଶି
ଦୂତୀ ଗୋ !
ବାଙ୍କ ବଂଶୀନାଦରେ
ବାଜନ୍ତି ଶବଦ ଶିଶୁ ବେଦରେ । ୧୯ ।

ଷୋଳ ସହସ୍ର ଚତୁର୍ବିଧି ହୋଇ
ସାର ଗୁଣଭାଗେ ଚୌଷଠୀ ହୋଇ
ଦୂତୀ ଗୋ !
ସବୁ ବଂଶୀ ନାଦରେ
ଷବଦ ଶୁଭଇ ଶିଶୁ ବେଦରେ । ୨୦ ।

ଶ୍ୟାମ ସୁନ୍ଦର ଅଭେଦ ପୀରତି
ସାତ୍ତ୍ୱିକ ସେବା ଯେ ପ୍ରେମ ପୀରତି
ଦୃଢ଼ ଗୋ !
ସର୍ବ ନବ ଅବଲା
ସମ ସାଧନାରେ ବିଷୟ୍ୟା ଖେଳା । ୩୧ ।

❋ ❋ ❋

❋ ❋ ❋

❋ ❋ ❋

# ଅଭିନ୍ନା ଚଉତିଶା

---

ଅଭିନ୍ନା ଚଉତିଶା ସେହି ଶ୍ରେଣୀର ପ୍ରେମକବିତା ଯହିଁରେ ଅସ୍ମମାନଙ୍କ ବିଦେଶୀ ଶିକ୍ଷାପ୍ରାପ୍ତ ସାହିତ୍ୟକାରମାନେ ତଥାକଥିତ ଅଶ୍ଳୀଳତାର ଗନ୍ଧ ପାଇ ନାସାକୁଞ୍ଚନ କରିବେ । ସ୍ୱାଧୀନ ଉତ୍କଳ ଶ୍ଳୀଳ ଅଶ୍ଳୀଳ ନିର୍ଣ୍ଣୟ କରିବା ପାଇଁ ନିଜର ମାପକାଠି ରଖିଥିବ । ସେ ଅତି ପ୍ରବେଦୃଷ୍ଟି ବଳରେ ଜାଣିପାରିବ ନ ଥିବ ଯେ ଲୋକାଏ ନୂଆ ଅଶିବ ଯହିଁରେ "ଶବଧପ୍ରବନ୍ଧ"-ଜାତୀୟ ତୁଲ୍ୟ ଗୀତ-ସ୍ୱରେହିତ ଜନ୍ମ ହୋଇ ଉତ୍କଳପୁତ୍ରଙ୍କୁ ଗୀତର ନୂଆ ସ୍ୱାଦ ଶିଖାଇ ଉତ୍କଳ ସାହିତ୍ୟରେ ନବଯୁଗ ପ୍ରବର୍ତ୍ତନର ପ୍ରୟାସ କରିବେ ।

କହୁଁ ସ୍ୱଦେଶୀ ଚତୁର ଶିରୋମଣି ଚଇତ ଚତ୍ରେ ଚତୋଇ ରେ
କୁସୁମ କାଲ କଳାକର କରଣେ କମ୍ପଇ ବ୍ୟାକୁଳ ହୋଇ ରେ

ଅଭିନ୍ନା !

କେହ୍ନୁ ବଶ୍ୟଥିବୁ ଧନ ରେ
କହିଁ ଠାରେ ବି ଷ୍ଟ ବଶ୍ୟରୁ ଥିବୁ
କେହ୍ନୁ ଥିବ ତୋର ମନ ରେ । ୧ ।

ଖୋସା ଖୋସି ବଦନେ ବଦନକେ ସରାଗେ ମୋ ଅଗେ ଦେଖାଉ ଆସି ରେ
ଖୋସି ଜାଣେମ କ ମୋହିଦା ଯନ୍ତ୍ରା ବୋଲି ବୋଲି ଅଙ୍ଗେ ଯାଉ ମିଶି ରେ

ଅଭିନ୍ନା !

• ଖେଳାଇ ନୟନ ଖୋସୁ ରେ
ଖସାଇ ଦେଲେ ଜୀବନ ଖୋସିଦେଇ
ଏ ପୁଣି କ ବୋଲି ଭାଷୁ ରେ । ୨ ।

ଗୋରି ଦେହ ଗଢ଼ି କୁଙ୍କୁମ ଲେପନେ ଉଠୁ ଯେ ଥାଇ ଝଟକି ରେ
ଗାଢ଼ ଆଲିଙ୍ଗନ ସୁରତରେ ଧନ ମୋ ମନ ଥାଉ ଅଟକି ରେ

ଅଭନ୍ମା !
ଗଳାର ହାର ତୁ ମୋର
ଗୁଣଗଉରି ! ତୋ ଗୁଣ ଗୀତ କରି
ଗାଉଥିବି ନିରନ୍ତର ରେ । ୩ ।

ଟାଂଗରା ପଡ଼ା ଦିବ୍ୟ ହେମ ଝିଲ୍ଲି ଗୁମ୍ଫା ସରୁଧାନମାଳ ରେ
ଘଷେଣି ହେମଉରଙ୍କେ ଲାଗିବାରୁ ଦାଗ ଣଡେ ଗୃଙ୍ଗା ଝଳ ରେ
ଅଭନ୍ମା !
ପଢ଼ୁକର ଭାବ ଯେତେ ରେ
ଯେତେ ପାଷାଣ ଦ୍ରବ ହୋଇଯିବ
ହୃଦୟ ସ୍ଥିର ମୋ କେବେ ରେ । ୪ ।

ନ ଦେଉ ଅଗ ଚୁମ୍ବନ ମୁଁ ନ ଦେଲେ ଥରେ ଥରେ ଅଗ ଦେଉ ରେ
ନ ଦେବୁ ମୋହ ବଚନକୁ ଶୋଷିଏ ବଳିଆଇ ଅଗେ ଦେଉ ରେ
ଅଭନ୍ମା !
ନିମିଷେ ଅନ୍ତର ନୋହୁ ରେ
ନବନୃକେଳିଲାଳସି ! ମଦାଳସି !
କି ଅପୂର୍ବ ଭାଷା କହୁ ରେ । ୫ ।

ଚନ୍ଦନପାଙ୍କ ଚନ୍ଦ୍ରାର୍ଦ୍ଧଭାଲପଟେ ଦିଶୁ ଯେ ଥାଇ ଶୁଭ୍ରୁଷି ରେ
ଶୁହିଁ ନ ଶୁହିଁଲେ କୋଇଲ ଶୁଣେ ମୋ ହୃଦୟ ହୋଏ କାତର ରେ
ଅଭନ୍ମା !
ଚିରକାଳ ମୁଁ ତୋ କିଣା ରେ
ଚିକ୍କଣକେଶୀ ମୋ ଅଭାଗ୍ୟ କାଳରୁ
କିଛି ତୁ କରୁଣା ଦିଣା ରେ । ୬ ।

ଛନ୍ଦ ଶ୍ରୀଭୁଜ ଶିରେ ଦେଇ ପ୍ରାଙ୍ଗଣେ ବଦନେ ଥିଲି ଉଭା ହୋଇ ରେ
ଛବିକ ଅନାଇ ମୁ ପଛଅଡ଼ରୁ ଆଲିଙ୍ଗନ କଲି ଯାଇ ରେ

ଅଘନ୍ଧା !

ଛାଡ଼ ଯା ବୋଇଲୁ ହସି ରେ

ଛଡ଼ୁନାହିଁ ମନୁ ଯାହା ବୋଲି ଅଛୁ

ଯାଇ କହୁ ପଛ ଦୂଷ୍ଟ ରେ । ୭ ।

ଯାମିନୀ ଯାକ ମୋ ଜାଗି ବସିଥାଉ ଉନ୍ନିଦ୍ରେ ମୁ ଯିବାପାଇଁ ରେ
ଯତନ କରି ପ୍ରଚ୍ଛଦନ ପଲଙ୍କ ତଳେ ପ୍ରଦୀପ ଦୋଡ଼ାଇ ରେ

ଅଘନ୍ଧା !

ଜାଣି ନାହିଁ ଏ ତୋ ପ୍ରୀତି ରେ

ଯାଉ ଜୀବଧନ ତୋ ଲାଗି ଜୀବନ

ଯୁଗେ ଯୁଗେ ରହୁ କୀର୍ତ୍ତି ରେ । ୮ ।

ଝୁମ୍ପାବନ୍ଧା କଳା ସରୁ ଶାଢ଼ୀ ଧନ ! ନୋହିଲେ ନ ପିନ୍ଧୁ ପରି ରେ
ଝୁଲ ଗଉର ! ତୋ ଝୁଲ ଶ୍ରୀଅଙ୍ଗକୁ ସେହି ଶାଢ଼ୀ ହିନା ତୋରି ରେ

ଅଘନ୍ଧା !

ଝୁଲୁଛି ସେ କଥା ଚିତ୍ତ ରେ

ଝୁଲଗଉର ! ବଳେ କୋଳେ ବସାଇ

ଯାହା ବୋଲିଅଛୁ ମତେ ରେ । ୯ ।

ନୂତନ କାଳେ ବଳେ ଖଟପରେ ଗୋସ୍ୱା ମୁଖକୁ ଗୁହାନ୍ତେ ରେ
ନତନୁ କେଳିଲାଳସୀ ମଦାଳସୀ ଯାହା କଲୁ ବପସୀତେ ରେ

ଅଘନ୍ଧା !

ନାୟିକାଗୁଡ଼ା ଫୁଲର ରେ

ନାହିଁ ନ ପାରିଲି ଗେଲେ ବୋଲୁଥାଉ

ସୁରତି ମାଗିବାପାଇଁ ରେ । ୧୦ ।

ଟେକ ଯାନ୍‌ରେ ବସାଇ ଚୁମ୍ବ ଦେଲେ ଟକା ଏ ନ ଟେକୁ ଶିର ରେ
ଟେକସ୍ତନେ ନଖମୁନ ଟିପିଦେଲେ ରଡ଼ ବୋଲି ଧରୁ କର ରେ
ଅହନ୍ନା !
ଟଳଗଲା ଚେତେ ସୁଖ ରେ
ଟଙ୍କଧରରୁ ଦୁହିଁଙ୍କ ଏକାଳେ
ଏକାବେଳେ ଦେଲୁ ଦୁଖ ରେ । ୧୧ ।

ଠିଅ ଯେ ହୋଇଥାଉ ଛନ୍ଦ ଚରଣ ଦ୍ୱାରବନ୍ଧେ କର ଦେଇ ରେ
ଠାଠିକମୁଖୀ ଦେଖିଲେ ଦୂରୁ ମନେ ହସଂଯାଉ ଅଡ଼େ ହୋଇ ରେ
ଅହନ୍ନା !
ଠାର ଶିଖିଅଛୁ କେତେ ରେ
ଠାକୁରାଣୀ ପଣ ମୂର୍ତ୍ତିବନ୍ତ ହୋଇ
ଭଲ ମାନିଥାଇ ଚତେ ରେ । ୧୨ ।

ଡେରଥାଇ କର୍ଣ୍ଣ ଝୁମକ ଝୁଣ୍ଟିଆ ନୂପୁର ନାଦଲୁ ଡୋର ରେ
ଡାଳମ୍ବଦଶନା ଜାଣି ମୋ ପାଶକୁ ଆସୁଥାଉ କେତେଥର ରେ
ଅହନ୍ନା !
ଡରୁଥାଇ ଚତ୍ରେ ମୁହିଁ ରେ
ଡମ୍ବରୁସରୁ ସ୍ତନର କଟି ତୋର
ବାଟେ ଭାଙ୍ଗିଯିବା ପାଇଁ ରେ । ୧୩ ।

ଢାଙ୍କ ନୟନ କୁ କର ଆଡ଼େ ଗ୍ରୀହୁଁ ଶ୍ରୀମୁଖ ଦେଲେ ଚୁମ୍ବନ ରେ
ଢଳି ପଡୁଥିଲେ ହୃଦକୁ ମୋହର ମୁଁ କରଇ ଆଲିଙ୍ଗନ ରେ
ଅହନ୍ନା !
ଢାଳେହେଁ ନୃତ୍ତିଲୁ ମନେ ରେ

ତମ କନ୍ଧନାହିଁ ତଳଦଳନେତ୍ରି !
ତୋଷିବ ଗରଳ ସଢେ ରେ । ୧୪ ।

ଅବଧାନ ଶନ୍ତ ଆନ ବୋଲି ମତେ ଭୁଣ୍ଡେ ନ ବସାଉଥାଉ ରେ
ଅଗୋ ଏ କି ବୋଲି ବୋଲୁଥାନ୍ତି ମତେ ବୋଲି ମୁଖେ ବାସ ଦେଉ ରେ
ଅଭନ୍ନା !
ଏହା ରଖିଥିବୁ ମନେ ରେ
ଆଉ ନ ପାରଇଁ ବୋଲିବାର ନାକ
ଦେଖିବ ଧନ ସପନେ ରେ । ୧୫ ।

ତୋ ଲାଗି ସକଳ ଦଣ୍ଡ ପରିତ୍ୟାଗୀ ହୋଇ ଅରଣ୍ୟେ ପଶିବ ରେ
ତପସ୍ବୀ ହୋଇ କେବଳ ତୋ ନାମମହାମନ୍ତ୍ର ଜପୁଥିବ ରେ
ଅଭନ୍ନା !
ତେବେ ନୋହିବ କି ଗତି ରେ
କି ପୁର ସୁନ୍ଦରି ! ତୋହୋପରି କରି
କେ ଦେବ ମୋତେ ଯୁବତୀ ରେ । ୧୬ ।

ସ୍ଥିର କରି ହଜେ ସ୍ଥିରଗମନୀ ତୋ ଉରଜରେ ଦେଲି କର ରେ
ଥରେ ଚୁମ୍ବନ ଦେଇ ବନ୍ଧୁ ! ବୋଇଲି ହେଲା କି ବନ୍ଧୁ ଏଥର ରେ
ଅଭନ୍ନା
ଥୋଇ ହୃଦୟରୁ ହାର ରେ
ଥାଉ କନା ବୋଲି ଯାହା କାନ୍ଧୁ ବନ୍ଧୁ
ନ ଥିବ କି ତା ମନର ରେ । ୧୭ ।

ଦେହପାଣି ସାରି ହଜେ ଅଗଣାରେ ଜଗା ହୋଇଥିଲୁ ଆସି ରେ
ଦେଇ ପଣନ୍ତ ମଥାରେ ମତେ ଦେଖି ସଦନକୁ ଗଲୁ ପଶି ରେ

ଅଦନ୍ନା !
ଦେହଳ ନକଟେ ଥାଇରେ
ଦବ୍ୟ ଚତ୍ରରେ ଢ ବଗ୍ରହ ଅଳପ
ଦ୍ୱଷିଲୁ ପାଲଙ୍କ ଗୃହଁରେ । ୧୮ ।

ଧୀରଗମନା ରେ ଧର ଚୋ ଶ୍ରୀକର ବପଶ୍ଚାତ ମୁଁ ମାଗନ୍ତେ ରେ
ଧରଣୀମଣ୍ଡନା ! ପୁଲକପଣ୍ଡିତା ! ସେହ୍ନମଙ୍କ କଲୁ ମତେ ରେ
ଅଦନ୍ନା !
ଧୀରେ ଅରମ୍ଭିଲ ରଢ ରେ
ଧର ଚ୍ମ୍ବନ ଦଅନ୍ତେ ତୋ ଶ୍ରୀମୁଖେ
ଢ ଭଙ୍ଗେରେ କଲୁ ଗଢ ରେ । ୧୯ ।

ନାସିକା ପୁଡ଼ା ଟେଙ୍କଲ୍କ କର ଭୁ ଯେ ଦ୍ୱସି କହୁଥାଉ ବାଣୀ ରେ
ନାହିଁ ନ ପାରବ ବୋଲ୍କି ଗେଲେ ବୋଲୁ ସ୍ୱରଣ ମାଗିବା ଜାଣେ ରେ
ଅଦନ୍ନା !
ଜାଣନ୍ତେ ତୋ ଭାବ ଗୁଣି ରେ
ନୟନ୍ ନୀର ଝର ଝର ଝରଇ
ନରୁଚଇ ଅନ୍ନ ପାଣି ରେ । ୨୦ ।

ପେଠିକର ଦନେ ପ୍ରିୟେ ! ଶୋଇନାହୁଁ ଏବେ ଦ୍ୱେଲୁ ଏତେ ଦୂର ରେ
ପରଶୁପାଣି କହବେ ସତେ ପଦ୍ମପାଦେ ଲଗାଇବ ଶିର ରେ
ଅଦନ୍ନା !
ପାସୋର ନ ଯାଉ ଚତ୍ରେ ରେ
ପୂର୍ବ ପୁଣ୍ୟ ଯେନ ସଙ୍ଗୀତପଠନ !
ପ୍ରାପତ ହୋଇଛୁ ମତେ ରେ । ୨୧ ।

ଫେଡ଼ ନାବବବ ବାନ୍ଧିଥାଉ କେତେ ଦେଖି ହୋଇଥାଇ ସୁଖୀ ରେ
ଫାନ୍ଦ ନ ଯାଇ ଚାହିଁଛି ଘର ଜୀବ ଏବେ ସେ ଛବି ନ ଦେଖି ରେ
ଅଘନା !
ଫାଟୁଛି ହୃଦୟ ମୋର ରେ
ଫୁଲ କାଳକାଣ୍ଡ ଘର ଦେଲା ଦଣ୍ଡ
ତୋ ବିନୁ ବନ୍ଧୁ ଏଥର ରେ । ୨୨ ।

ବୋଲୁ ଯେ ଥାଉ ପିଣ୍ଡରେ ପ୍ରାଣ ଥିଲେ ଏ ପ୍ରୀତି ନୋହିବ ଭିନ୍ନ ରେ
ବେଳକୁ ବେଳ ରଖିବ ନାହିଁ ପରି ବୋଲି କଲୁ ଆଲିଙ୍ଗନ ରେ
ଅଘନା !
ବହୁ କଲା ଏତେ ପର ରେ
ବୀଣାବଦନ ! ତୋ ବିନୁ ପ୍ରବାସରେ
ଏବେ ମରୁଅଛି ଝୁରି ରେ । ୨୩ ।

ଭାଙ୍ଗି ପଡ଼ିଥାଇ ଲୋଟଣୀ କ୍ରୀଡ଼ାରେ ସରୁ ଚୁଲିଅଳା ଗର୍ଭ ରେ
ଭନେ ପର ଫୁଲେ ଗର୍ବ କରିଥିଲେ ଦିଶୁଥାଉ ମହାଶୋଭା ରେ
ଅଘନା !
ଭଲା ତୋ ସୁନ୍ଦରପଣ ରେ
ଭାବିଲେ ଭାବନା ! ଦିବସ ରଜନୀ
ସରିବ ନାହିଁ ତୋ ଗୁଣ ରେ । ୨୪ ।

ମାଛିଲା ମଦନମୂର୍ତ୍ତିକି ପରାୟେ ବିରାଜୁଥାଏ ଶ୍ରୀମୁଖ ରେ
ମୁଁ ଦଣ୍ଡେ ଶ୍ରୀମୁଖ ବାରେ ନ ଦେଖିଲେ ମାଡ଼ି ପଡ଼ୁଥାଉ ଦୁଃଖ ରେ
ଅଘନା !
ମୂର୍ଚ୍ଛିବା ପଦାର୍ଥ ନୋହୁରେ
ମୁନିମୋହନ ! ତୁ ମୋହୋଇଲାଗି ସିନା
ପରେ ପରିହରି ସହୁ ରେ । ୨୫ ।

ଜୂଡ଼ା ଭିଙ୍ଗି ମୁଁ ଯେ ବେଣୀ କରୁଥାଇ ଜାନୁରେ ବସାଇ ଅଣି ରେ
ଜାଣୁମଣି ! ମନ ଜାଣି ଲାଜ ପାଉ ଥରେହେଁ ନ କହୁ ବାଣୀ ରେ
ଅଭନ୍ନା !
ଯାହା ଗୁହାଁ ମନେ ହସୁ ରେ
ଜମୁନଦଗୋର ! ଯେବେ ଲେଉଟିବ
ଅନ୍ତର ନୋହୁଣ ପାଶୁ ରେ । ୧୬ ।

ରମ୍ଭା ମନୋରମା ରତି ତିଲୋତ୍ତମା ଶଚୀ ଅବ ଯେତେ ନାରୀ ରେ
ରମଣି ! ତୋ ରଙ୍ଗାଚରଣ ତଳକୁ ଜଣେହେଁ ନୁହନ୍ତି ସରି ରେ
ଅଭନ୍ନା !
ରସେ ରଖାଇଛୁ ମୋତେରେ
ରସବତି ! ତୋହ ଯେନ ମୁଁ ରସିକ
ବୋଲି ବୋଲନ୍ତି ଜଗତେ ରେ । ୧୭ ।

ଲେଖି ଯେ ଥାଉ ଲେଖ ଲାକ୍ଷାରସରେ ନାଗର ! ଅକ୍ଷରମାନ ରେ
ଲକ୍ଷେ ଥର ଛାତିରେ ଲଗାଇ ମୁଖରେ ଦିଅଇ ଲକ୍ଷେ ଚୁମ୍ବନ ରେ
ଅଭନ୍ନା !
ଲୋଡ଼ିଲେ କେ ଦେବ ତୋତେ ରେ
ଲେଶେ ମୁଁ ପାଶରୁ ଅନ୍ତର ନୋହିବ
ଲେଉଟି ଆସିବ ଯେବେ ରେ । ୧୮ ।

ବିପରୀତ ଅନ୍ତେ ବେଶ କରି ତୋତେ ବସାଇଲେ ଆଣି କୋଳରେ
ବିନୟ ହୋଇ କର ଧରି ବୋଇଲ ଏବେ ହୋଉ ଅଭି ବେଳ ରେ
ଅଭନ୍ନା !
ବଦନେ ଚୁମ୍ବନ ଦେଇ ରେ
ବୋଧ ନୁହ ବନ୍ଧୁ ଯେତେ ହେଲେ ବୋଲି
ବୋଲିଲୁ ଗେଲାଇ ହୋଇ ରେ । ୧୯ ।

ଶରଦ ନଶିରେ ଯନେ ସରୋଜାକ୍ଷି ! ସ୍ତନାଙ୍ଗ ଚନ୍ଦନ ହୋଇରେ
ଶିନ୍ଦୂର ଶାଢ଼ୀ ଉପରଣ ଦେଲ ମୋ ଅଗେ ହସ୍ତ ହେଲୁ ଯାଇ ରେ
ଅହଲ୍ୟା !
ସନ୍ତୋଷ ହେଲ ଅନାଇ ରେ
ଶରଧା କର ଆଲିଙ୍ଗନ କରୁ ତୋ
ମୁଖେ ଚୁମ୍ବ ଦେଲ ନେଇ ରେ । ୩୦ ।

ଷିଗ୍ରଷଅଙ୍ଗୀ ଶ୍ରୀମୁଖ ମୋଡ଼ି ଦେଇ ଯାହା ବୋଲିଅଛୁ ହସି ରେ
ସେହବଦନ ସେହୁ କଥା ଅହର୍ନିଶ ହୃଦେ ହେଉଥାଇ ଘୋଷି ରେ
ଅହଲ୍ୟା !
ସବୁ ସୁଖ ମୋର ଭୁଞ୍ଜ ରେ
ସତେ ମହାପ୍ରଭୁ ରଖି ଥିବେ ଶଙ୍ଖେ
ପୂର୍ବେଇ ଚକ୍ର ଘୋଡ଼ାଇ ରେ । ୩୧ ।

ସୁନ୍ଦର ତିଳକୁସୁମ ନାସାପୁଟେ ଶୋହେ ମୋତି ନାକଚଣାରେ
ସହନେ କେତେ ସୁନ୍ଦର ଦିଶୁଥାଇ ଘଷାବସା କମ ଗୁଣାରେ
ଅହଲ୍ୟା !
ସହକି ସହଏଁ ଜଣାରେ
ସୁଲୁଭ ନଥିଲା ଲୋକ ତା ଲୋକନ
କରବା କଥା କି ଭଣାରେ । ୩୨ ।

ହୋଇ ସୁବେଶ ସ୍ମରତ ସଦନରେ ମୋ ପାଶେ ହୋଉ ପ୍ରବେଶରେ
ହର ଉରରୁ ବସନ ପରରମ୍ଭ କଲେ ହେଉ ହସ ହସରେ
ଅହଲ୍ୟା !
ହରଷେ ମୋଗଲା ଭଉରେ
ହେଲେ ରତିରସେ ଅଣାଯୁକ୍ତ ବଶେ
ଅଧରେ ଅଧର ପୀଡୁରେ । ୩୩ ।

କ୍ଷଣେ ନ ଦେଖିଲେ ଗବାକ୍ଷ ମାର୍ଗରେ ଗୃହୁଁ ଥାଉଁ ମୋତେ ଅଚିରେ
କ୍ଷପାକରମୁଖି ! ରଜନୀ ଦିବସେ ମୋ'କଥାରେ ଥାଉ ରସି ରେ
ଅଗଲ୍ଲା !
କ୍ଷିତିମଧ୍ୟେ ତୁମ୍ଭ ସାର ରେ
କ୍ଷେମେ କହେ ବିପ୍ର ଦାଶରଥି ଦାସ
ତୋତେ ତୁମ୍ଭ ପଠାନ୍ତ ରେ । ୩୪ ।

# ବା ଚଉତିଶା

ହିନ୍ଦୁସ୍ଥାନ ପରାଧୀନ ହେବା ପରେ ସମାଜରେ ଓ ଧର୍ମରେ ଯେଉଁ ବିଭ୍ରାଟ ଘଟିବ ଭବିଷ୍ୟତ ବାଣୀ ରୂପେ ତାହା ଏହି ଚଉତିଶାରେ ବର୍ଣ୍ଣିତ ହୋଇଅଛି । ଚଉତିଶା ଯେ ବହୁ ପ୍ରାଚୀନ ତାହା । "ମୋଗଲ ଖାଇବେ ଓଡ଼ିଶା ରାଇଜ" "ଠିକାଟିକୁ ଧାନ ଭରଣେ ହୋଇବ" ଓ "ଛପ୍ୟାଟଣାର ସହସ୍ର ରାଜାଙ୍କ ଉପରେ ଓଡ଼ିଶା ରାଜା କରତା" ପ୍ରଭୃତି ପଂକ୍ତିମାନଙ୍କରୁ ବେଶ ପ୍ରତିପନ୍ନ ହେବ । ତେଲଙ୍ଗା ମୁଘଲ ମରହଟି ମୁଦ୍ରାଙ୍କିତ ସ୍ୱାଧୀନ ଓଡ଼ିଶା ଯେତେବେଳେ ବୈଦେଶିକଙ୍କ ହୋଇଗଲାରେ ସ୍ୱାଧୀନତା ହରାଇ ଧର୍ମ ଓ ସଭ୍ୟତାର ନିମିତ୍ତ ଲୋକେ ଅଧୀର ହେଉଥିଲେ ସେତେବେଳେ ବୋଧହୁଏ କବି ଲୋକନାଥ (ଦାସ)ଙ୍କ ମନରୁ ଉଦିତ ଚଉତିଶା ବର୍ଣ୍ଣିତ ବିଷୟବାର୍ତ୍ତା ପଛରେ ସ୍ୱପ୍ନ ଦେଖିଥିଲେ । ପୂର୍ବରୁ କହିଅଛୁଁ ଯେ ଚଉତିଶାରେ ନାନା ବିଚିତ୍ରତା ପ୍ରଭାବ ଓଡ଼ିଆ କବିଙ୍କର କବିତା ରଚନାରୁ ଅନୁମାନ ଥିଲା । ପଦ ଶେଷରେ 'ବା' ଲଗାଇବା ଏହି ବିଚିତ୍ରତାରୁ ଗୋଟିଏ ।

କହନ୍ତି ଯୁଧିଷ୍ଠି ସହଦେବ ଭାଇ ଶୁଣ ତୁମ୍ଭେ ମନ୍ତ୍ରୀବର !
କଳିଯୁଗରେ ଯେ ଦେବତା ବ୍ରାହ୍ମଣ କେମନ୍ତ ଅଛନ୍ତି ଅଗ୍ରେ ବା
କହ କଳିଯୁଗ କଥା
କହି ଫେଡ଼ି ହୃଦ ମନ ବ୍ୟଥା ବା । ୧ ।

ଖଡ଼ି ଧରଣ ସହଦେବ ବୋଲନ୍ତି ଶୁଣ ତୁମ୍ଭେ ନୃପବର
ଷଣେ ରାଜା ପରଜାଙ୍କୁ ଦୟା ନୋହିବ ବହୁଣ ନେବେ ସକଳ ବା
ଖନ ଥାଉଁ ଶାଧିଥିବେ କର
ଷଣେ ପରଜା ଦେବେ କାହାର ବା । ୨ ।

ଗାଉଡ଼ୀ ମନ୍ତ୍ର ପଢ଼ିବେ ବ୍ରାହ୍ମଣେ ଗାୟତ୍ରୀ ମନ୍ତ୍ରକୁ ଛାଡ଼ି
ଗଉଡ଼ମାନେ ବୈଷ୍ଣବ ବୋଲାଇବେ ଗଳେ ପୈତାରୁ ବାହୁନି କାଢ଼ି ବା
ଗୁରୁ ନମାନନ୍ତେ ଅଜ୍ଞ ଶିଷ୍ୟ
ଗୁରୁଙ୍କୁ ନାଶ୍ଚ ଦେବେ ବିଷ ବା । ୩ ।

ଘରେ ଘରେ ସବୁ ହିନ୍ଦୁ ଉପୁଜିବ କେହି ନ କହିବେ ସତ
ଘେନିବେ ବ୍ରାହ୍ମଣେ ମୃତ୍ୟୁଶଯ୍ୟାଦାନ ନେଇ ଲୋକଙ୍କୁ ପାଇବେ ହାତ ବା

ଘୃତ ନ ଦେବେନ୍ତି ଅଗ୍ନି ମୁଖ
ଘରେ ଘରେ ମାଗୁଥିବେ ଭଜ ବା । ୪ ।

ଙେତ ଲୋକମାନେ ଉଚ୍ଚରେ ଉଠିବେ କଉଡ଼ିରେ କର ପ୍ରୀତ
ଙେତ ଉଚ୍ଚ ଦୁହେଁ ସରିସମ ହେବେ ନ କରିବେ ଭୟ ଭ୍ରାନ୍ତ ବା
ଙିଜ ଭ୍ରାତାକୁ ଛାଡ଼ିବେ ନାଶି
ଙଅଁ ଗିଳିବେ ସାହାସ କରି ବା । ୫ ।

ଚଢା ପଇତା ତ୍ୟାଗଭ୍ର ଛଡା ଗୃହବେଦ ଅଧିକାରୀ
ଚଉତବର୍ଣ୍ଣେ ଚଉଥୂସ୍ତ ହୋଇବେ ମଦ୍ୟପଙ୍କ ସଙ୍ଗେ ସର ବା
ଚତ୍ରେ ନୋହିବ ଯେ ଭୟଭ୍ରାନ୍ତ
ଚଣ୍ଡାଲ ବ୍ରାହ୍ମଣ ସଙ୍ଗେ ପ୍ରୀତିବା । ୬ ।

ଛତ୍ରି ଲୋକମାନେ ସଂଗ୍ରାମକୁ ଯାଇ ଜୀବକୁ କରିବେ ଆଶ
ଛଛନେ ରଣେ ବଇକୁଣ୍ଠ ପ୍ରାପତ ଛାଡ଼ି ପଳାଇବେ ରଣ ଯଶ ବା
ଛଲେ ନୋହିବେ କେ ଛତ୍ରିପଣ
ଛତ୍ରି ହୋଇଣ ଛାଡିବେ ରଣ ବା । ୭ ।

ଜାତି ଅଜାତି ଏକାକାର ହୋଇବ ଘରେ ଘରେ ହେବ ଭ୍ରଷ୍ଟ
ଜଉତିଷମାନେ ଲଗ୍ନ ନ ଜାଣିବେ ଜଳ ଅକାଳେ କରିବେ ବୃଷ୍ଟି ବା
ଜୀବ ଜନ୍ତୁରେ ନ ଥିବ ଦୟା
ଜଗନ୍ନାଥେ କରିଛନ୍ତି ମାୟା ବା । ୮ ।

ଝିଅ ବିଭାକର କଉଡ଼ି ଘେନିବେ ତହିଁ ନ ସରିବ ଦିନ
ଝିଅର କଉଡ଼ି ଝିଅ ଘେନିଯିବ ସଂସାରେ ବୋଲିବେ ହୀନ ବା
ଝୁଲ ଘୁବନ୍ତି ଦଶେ ଯେସନ
ଝିଅ ନ ଦେବେନ୍ତି କନ୍ୟା ଦାନ ବା । ୯ ।

ଞସତ ହୋଇବେ ଞପ୍ରେମ କରିବେ କେହି ନ କହିବେ ସତ
ନବ ଯୁବାସ୍ତ୍ରୀଏ ଘରେ ଥାଉ ଥାଉ ବିଟପୀ ସ୍ତ୍ରୀଙ୍କ ରତ ବା
ଞ କରିବେ ବୃଦ୍ଧାମଣା ରଜା
ଞଷ୍ଟେ ମରିବେ ଗୋ ଜନ୍ତୁ ପ୍ରଜା ବା । ୧୦ ।

ଟାହି କରିବେ ଶୂଦ୍ର ଯେ ବ୍ରାହ୍ମଣଙ୍କୁ ଟେକିଛୁ ଯେଉଁ ସାହାଣ
ଟଙ୍କାଟିକୁ ଧାନ ଭରଣେ ହୋଇବ ନ ମିଳିବ ଅନ୍ନ ବସ୍ତ୍ର ବା
ଟେକ କହ କନା ଧର୍ମରାଜ୍ୟେ
ଟେକ ଅଛୁ ଯେଉଁ ଦେବତାଏ ବା । ୧୧ ।

ଠାକୁର ଯୁଧିଷ୍ଠି କର୍ଣ୍ଣି କୁଇଁ ଉଠି କି ବୋଇଲୁ ବାପ ଭାଇ
ଠାକୁରପଣ ପଛେ ନୋହିବ କଳିଯୁଗେ କାର୍ଯ୍ୟ ନାହିଁ ବା
ଠିକେ କହସି ମୋର ଆଗରେ
ଠାକୁର ପଣ ପଛେ ହୋଉ ଦୂର ବା । ୧୨ ।

ଡରିବେ ନାହିଁ ବୋହୂମାନେ ଶାଶୁଙ୍କୁ ଅନ୍ୟାୟରେ ଦେବେ ଗାଳି
ଡାକିଣୀ ଡାଇଣୀ ବାଦେ ଲାଗିଥାଇ ଘରେ କରୁଥାଇ କଳି ବା
ଡର ନୋହିବ ପିତା ମାତାଙ୍କୁ
ଡେଇଁ ଯିବେଟି ଶିଷ୍ୟ ଗୁରୁଙ୍କୁ ବା । ୧୩ ।

ଢାଳେହେଁ ବ୍ରାହ୍ମଣେ ସନ୍ଧ୍ୟା ନ କରିବେ ଅବିଦ୍ୟା ପାଠ ପଢିବେ
ଢମ କରୁଥିବେ ରାଇଁ ଖିଅ ପଣେ ଶୂଦ୍ରଙ୍କ ସଙ୍ଗେ ବସିବେ
ଢାଳେ ପାଣି ଛିଟି ଦେଇ ଛଡା
ଢମେ ବୋଲେ ରଜା ନମହଳା ବା । ୧୪ ।

ଅହଙ୍କାର ମନ ଦଣ୍ଡେହେଁ ନ ଯିବ ନରକରେ ମନେ ଦୁଖ
ଅପଣା ସ୍ତ୍ରୀଙ୍କ ପର କେଉଁଥିବ ଶୁହୁଁଥିବେ ତାର ମୁଖ ବା

ଅଣ ଅପ୍ରାଧ ହୋଇବେ ନାଶ
ଅଣ ଅଯୁକ୍ତ ନୋହେ କାହାର ବା । ୧୫ ।

ଛନ୍ନ ଛନ୍ନ ବର ଏକା ଯୁବତୀର ଲଜ୍ଜାକୁ ନ ଥାଇ ଡର
ଛନ୍ନ ଛାଡ଼ି ଗୃହ ଗୃହସ୍ଥ ହୋଇଲେ ପୁଣି ହୃଦୀୟ ସ୍ୱୟମ୍ବର ବା
ସ୍ତ୍ରିୟା ନ ମାନସେ ପୁରୁଷଙ୍କୁ
ଗୃହ ଗୃହସ୍ଥ ଏକା ଜଣଙ୍କୁ ବା । ୧୬ ।

ଯୋଇଲା ମାଇପ ଘର ଯେ କରବେ ବ୍ୟାଘ୍ରୀ ମାଇପଙ୍କୁ ଛାଡ଼ି
ଥାନୀ ଲୋକମାନେ ଥାନ ଛାଡ଼ିଯିବେ ବିଥାନୀ ବସିବେ ମାଡ଼ି ବା
ଥପ୍ପେ ନୋହିବ କାହାର ବୃତ୍ତି
ଯେଣ୍ଟ ଗଣ୍ଡିଅ ଖାଇବେ ରୁନ୍ଧ ବା । ୧୭ ।

ଦଅର ଭାଉଜ ଘର ଯେ କରିବେ ଗୃହସ୍ଥ ହେବ ପୋଇଲା
ଦାଉଣ୍ଡି ବଳଦ ମୁହଁ ବାନ୍ଧିଥିବେ, ବ୍ରାହ୍ମଣେ କରବେ ମାୟା ବା
ଦନ ନ ସରେ ଦନ ମୂଲଅ
ଦୁଇ ପହରକୁ ଠିଅ ଠିଅ ବା । ୧୮ ।

ଧର୍ମ ଲୋକମାନେ ଅଧର୍ମକୁ ଯିବେ କାହାଣକେ ନେବେ ପଣେ
ଧର୍ମ ତହୁଁ ଅଛି ଅଢାଇ ବୋଉକ ସମସ୍ତେ ଜଣେ ଜଣେ ବା
ଧର ନେବେଟି ଟଙ୍କଣି ଟଙ୍କା
ଧର୍ମ କାହାକୁ ନୋହିବ ସଖା ବା । ୧୯ ।

ନ ଶୁଣିମେ ରାଜା ପରଜା ଗୁହାରି ନଷ୍ଟେ ମରବେ ଗୋ ଜନ୍ତୁ
ନସଦେ ଖାନ ପରଜା ହସ୍ତେ ଦେଇ କରବେଟି ହନ୍ତୁ ସନ୍ତୁ ବା
ନାହିଁ ଶ୍ରେଣିକୁ ଏମନ୍ତ ଶାସ୍ତ୍ରେ
ନଷ୍ଟେ ଉପୁଜାଇ ହେବେ କଷ୍ଟୀ ବା । ୨୦ ।

ଯୋଉଲା ମାଇପ ପଢ଼ା ଲେଖିଦେବ ପଢ଼ୁଆଙ୍କୁ ନେବେ କର
ବୁଢ଼ା ବୁଢ଼ୀଙ୍କ ବାହାର କରି ଦେଇ ପୁଅ ବହୂ କରିବେ ଘର ବା
ପୁଅ ବାପଙ୍କୁ କହିବେ ଲୋକ
ପାପ ପୁଣ୍ୟକୁ ନଥିବ ଦକ ବା । ୧୧ ।

ଫଳିବ ନାହିଁଟି କଉଁ କୃଷି କଅଁଶ ଶକାଟରେ ହୋଇବ ଠାଣ
ଫନାକଲେ ଫଳ ଯାକ ନ ଅଣ୍ଟିବ ସାହୁଙ୍କୁ ନ ଦେବେ ଋଣ ବା
ଫଳ ଜଗୁଁ ଜଗୁଁ ନ ରହିବ
ଫୁଲ ଫୁଟିଲେ ଫଳ ନୋହିବ ବା । ୧୨ ।

ବିଧବା ବ୍ରାହ୍ମଣୀ ପେଟପୋଡ଼ା ଖାଇ ଶୂଦ୍ରଙ୍କ ସଙ୍ଗରେ ରହି
ବ୍ରାହ୍ମଣମାନେ ଅନ୍ୟାଶ୍ରୟ ହୋଇବେ ନୀଚ ସଙ୍ଗରେ ପୀଇବି ବା
ବେଦ ଛାଡ଼ି ବ୍ରାହ୍ମଣେ ଋଷୀ
ବହୂ ମାରିବେ ଶାଶୁଙ୍କୁ ପଣି ବା । ୧୩ ।

ଭାଇ ବହୂ ଦେଢ଼ଶୁର ନ ମାନିବେ ଯେଉଁ କହୁଥିବେ କଥା
ଭଣ୍ଡାରୀମାନେ ଚତୁର୍ଥୀ ହୋଇବେ ଶୂଦ୍ର ହେବେ ନମସ୍ତା ବା
ଭଜ ନୀଳାଚଳପତି ଏକା
ଭଣେ ପାମର ଅର୍ଜିତ ଲୋକା ବା । ୧୪ ।

ମୃଗୁଲ ଖାଇବେ ଓଡ଼ିଶା ରାଇଜ ଯୁକେଷ୍ଟି ଅଛନ୍ତି ଦେଇ
ମଲେଚ୍ଛ ପରଜା ହିନ୍ଦୁମାନ ହୋଇ ତୃଥିକର ଶାପ୍ୟ ପାଇ ବା
ମାତା ପିତା ନ ମାନିବେ ପୁଅ
ମାଇପଙ୍କଠାରେ ବଡ଼ ସ୍ନେହ ବା । ୧୫ ।

ଯୁବାସ୍ତ୍ରୀ ବାପ ଘରରେ ଛାଡ଼ିଣ ଦାଣ୍ଡେ କହିବେ ବଡ଼ାଇ
ଜପ ନ କରିବେ ଧର୍ମ୍ମ ନ କରିବେ ଲୋକାଙ୍କ ଧନ ବୁଡ଼ାଇ ବା

ଯୋଗ ଜଉତଷ ନ ଜାଣିବେ
ଜଳ ଅକାଳେ ବୃଷ୍ଟି କରିବେ ବା । ୧୬ ।

ରାଜା ନ ଶୁଣିବେ ପରଜା ଗୁହାରି ମନ୍ତ୍ରୀଙ୍କି ରାଉଳ ଦେଇ
ରଇଜ ଯାକ ବାହାପିଅ ଖାଇବେ ଛଠିପହମାନ ବହୁ ବା
ରାଜା ଜଗନ୍ନ ଯାକରେ ପଢ
ରାଜା ଯୁଯେଷ୍ଟି ପ୍ରଭୁ କହନ୍ତି ବା । ୧୭ ।

ଲୋଭରେ ପ୍ରାଣୀ ଛଟ ପଟ ହୋଇବେ ଜଳମୀନ ପାୟେ ହୋଇ
ଲେଖାଲେଖି ଏକା ଦନକେ ସରିବ ପାପ ପୁଣ୍ୟ ଭୟେ ନାହିଁ ବା
ଲୁହା କଳଙ୍କ ଲାଗିଣ ଭସ୍ମ
ଲୋଭ ଲାଗି ପ୍ରାଣୀ ଯିବେ ନାଶ ବା । ୧୮ ।

ବଇଦମାନେ ବ୍ୟାଧିକି ନ ଚିହ୍ନିଣ ମନ୍ତ୍ରକୁ କରିବେ ହେଳା
ବିଶ୍ୱାସ ଲୋକେ ଅବିଶ୍ୱାସ ହୋଇବେ ମିଛେ କରିଥିବେ ମେଳା ବା
ବିଷ ବିଶ୍ୱାସ କଲେଣ ଖାଇ
ବୁଦ୍ଧିକୁ ଭୁଲିଣ ଭ୍ରମେ ମରଇ ବା । ୧୯ ।

ସହଦେବ କହେ ଶୁଣ ଧର୍ମରାୟେ କଳିଯୁଗର ଏ ଗଢ
ସହସ୍ରେ ବରଷ କଳି ଭୋଗ ହେଲା ଧରାଗଣ ଦଣ୍ଡଛଡ଼ ବା
ଶୁଣି ମହନ ଯୁଯେଷ୍ଟି ରାୟେ
ସଭା ମଧ୍ୟରୁ ଶୂନ୍ୟକୁ ଗୃହେଁ ବା । ୨୦ ।

ସହଦେବଙ୍କୁ ଯୁଯେଷ୍ଟି ଅଜ୍ଞାଦେଲେ ଶୁଣ ତୁମ୍ଭେ ମନ୍ତ୍ରୀବର
ସକାଳ ଯେ ମୋତେ ଦର୍ଶନ କରିବ ତାକୁ ଦେବି ରାଜ୍ୟଭାର ବା
ସଜ କରିଣ ଆଣ ଅଣକୁ
ଖାଡ଼ୀ ଦେଲେ ଡାଲି ପାଇକକୁ ବା । ୨୧ ।

ସ୍ନାହାନ କମନ୍ତେ ସ୍ୱବର୍ଣ୍ଣ ଗରାରେ ଅପଟେ ଆଣିଲେ ପାଣି
ଶାଢ଼ୀ ଦେଲେ ତାଙ୍କ ଗଜପତି ପଣେ ଯୁଦ୍ଧିଷ୍ଠି ଯେ ନୃପମଣି ବା
ଶାଢ଼ୀ ହେଇ ବୈକୁଣ୍ଠକୁ ଗଲେ
ସଙ୍ଗତରେ କାହାକୁ ନ ନେଲେ ବା । ୩୨ ।

ହର ହର ବୋଲି ଶୁଭିଲା ଶବଦ ଯୁଧିଷ୍ଠି ସ୍ୱର୍ଗକୁ ଗଲେ
ହେମ ସେତବନ୍ଧ ଗରୁଡ଼ କଣ୍ଠାଟ ଓଡ଼ିଶା ରାଜାଙ୍କୁ ଦେଲେ ବା
ହସ୍ତୀ ମଣ୍ଡଳେ ଧବଳ ଛତ୍ର
ହରିଚରଣ ଧର୍ମ ନୃପତି ବା । ୩୩ ।

ଛପନ କୋଟି ଜୀବଜନ୍ତୁ ଉପରେ ଜଗନ୍ନାଥ ପ୍ରଭୁଦାତା
ଛତ୍ରିଶୋଇ ସହସ୍ରେ ରାଜାଙ୍କ ଉପରେ ଓଡ଼ିଶା ରାଜା କରତା ବା
କ୍ଷଣେ ଚିନ୍ତା କରେ ପଦ୍ମମୁଖ
କ୍ଷର ଲୋକା ବୋଲେ ମୋତେ ରଖ ବା । ୩୪ ।



# ବା ଚଉତିଶା

---

ବିପ୍ର କପିଳଙ୍କ ଏ ବା ଚଉତିଶା ଦେବନାଥଙ୍କ ବା ଚଉତିଶାର ଅନୁକରଣରେ ଲିଖିତ। ହେଲେ ହେଁ ତାଙ୍କ କବିତାର ବିଷୟ ବିଭିନ୍ନ। ଏଥିରୁ ଜଣାଯାଏ ଏ ବା ଚଉତିଶା ମଧ୍ୟ ଖୁବ୍ ପ୍ରଚଳନ।

କରୁଣାସାଗର କମଳାଙ୍କ ବର କରେ ଶଙ୍ଖଚକ୍ର ଧର
କୋଟି କନ୍ଦର୍ପ ଲାବଣ୍ୟ ହାରରୂପେ ଦନୁଜକୁଳ ନିବାର ବା
(ତୁମ୍ଭ) କଟି କୁସୁମରେ ଚୂଳ
କର୍ଣ୍ଣେ ଶୋଭୁଛି ରତ୍ନକୁଣ୍ଡଳ ବା । ୧ ।

ଖେନ୍ଦ୍ରଧର କର ଦେବଚକ୍ରଧାରୀ ଯୋଗେ ଲଗାଇଲ ବେଳ
ଖୁମାଣ ପଟେଣ ଅଙ୍ଗେ ଅଛି ବିପ୍ର କୁମର ଶ୍ରୀଅଙ୍ଗେ ମାଇଲୁ ଧୂଳ ବା
(ତୁମ୍ଭେ) କ୍ଷୀରସିନ୍ଧୁ ମଧ୍ୟେ ଥାଅ
ଖେଳୁ ଅନ୍ଧକୁ ଲୋଚନ ଦିଅ ବା । ୨ ।

ଗହନ ବନେ ଭ୍ରମନ୍ତି ମୁନିମାନେ ଗତାଗତି ଅବା ବହି
ଗୋବର୍ଦ୍ଧନ ଧରି ଗୋପଙ୍କୁ ରଖିଲ ଗୁଣମଣି ଭାବଗ୍ରାହୀ ବା
(ତୁମ୍ଭ) ଗିରିଧର ନାମ ତେଣୁ
ଗ୍ୟାନୀ ନାମ ଅଛନ୍ତି ବଖାଣୁ ବା । ୩ ।

ଘୋଟୁଛି ବ୍ରହ୍ମାଣ୍ଡ ଘୋର ନବଖଣ୍ଡ ନାମର ଯେ ଫଳାଫଳ
ଘେନ ରାଧିକାଙ୍କୁ ଯେତେ ଭାବ କଲ ନବୀନ ବାଳଗୋପାଳ ବା
(ତୁମ୍ଭେ) ଘୋରବନେ ଥାଅ ରହି
ଘୃତ ଲବଣୀ ଖାଅ ଚୋରାଇ ବା । ୪ ।

ନାୟିକା ବଧାନ ଛଳ କୁସୁମେଣ ନୀଳମେଘ କାନ୍ତି ଶୋଭେ
ନେତର ଉପରେ ପତନ ଗନ୍ଧର୍ବ ରୂପେ ଯୋଗୀଜନ ମୋହେ ବା
ତୁମ୍ଭେ ନାରାୟଣ ନରାକାର
ନାମ ଜପନ୍ତି ବ୍ରହ୍ମା ଶଙ୍କର ବା । ୫ ।

ଚମ୍ପା ନାଗେଶ୍ୱର ଚୂଳକୁ ସୁନ୍ଦର ଚିତ୍ର ହରନେଲେ ମୋର
ଚନ୍ଦନ ପାନ୍ଥ ଜଗତ ମୋହୁଅଛୁ ଚଞ୍ଚଳା ଦେବୀଙ୍କ ବର ବା
(ତୁମ୍ଭ) ଚଞ୍ଚଳ ବଦନ କଳା
ଗୃହିଁ ପଡ଼ଣି ମଲ୍ଲ ମଉଳା ବା । ୬ ।

ଛୁରୀ ଧାରନେତ ଛଟୀ ପଡ଼ାମତ ଛନ୍ଦନ ଗୃହିଁଣୀ ଦେଖ
ଛୀର ସଙ୍ଗତେ ଯେ ପୂତନା ଶୋଷିଲ ଛେଦିଲ ସଂସାରଦୁଃଖ ବା
(ତୁମ୍ଭେ) ଛେଦିଲ ସ୍ତ୍ରିଧର ନାଶା
ଛର ତରୁତଳେ କର ବସା ବା । ୭ ।

ଜଗତଜୀବନ ଯଶୋଦା ନନ୍ଦନ ଯୁବତୀକୁଳଧାରଣ
ଜନ୍ମପଢ଼ି ଯାର ନାମକୁ ଜଙ୍କର ଯୁପେନ୍ଦ୍ର ରାଜାଙ୍କ ପ୍ରାଣ ବା
(ତୁମ୍ଭେ) ଜୀବନ ଦେଲ ପାଷାଣ
ଯାଜ୍ଞେ ଜଗି ଅସୁରଙ୍କ ଧ୍ୱାଣ ବା । ୮ ।

ଝୁଣ୍ଟି ଝୁଣ୍ଟି ମୁଖ ନରେଷିଣ ଦୁଃଖ ଝମକାଟେ ଯାଇ ମନ
ଝାଡ଼ର କୁସୁମ ମାଳ ଶୋଭିବନ ଚତୁସମ ଲାଗି ତନୁ ବା
(ତୁମ୍ଭେ) ଝାମ୍ପି ମାଇଲ ଅସୁର
ଝିଅ ନେଲନ୍ତି ବଳେ ରଜାର ବା । ୯ ।

ନବଘନଶ୍ୟାମ ନାହିଁ ଅନୁପାମ ଶରଣ ରକ୍ଷଣ ବାନା
ନଷ୍ଟ ଦାରୁଣ ଦୁଃଶାସନ ଅତେଣି ଦ୍ରୁପଦୀଙ୍କ ବଜସେଥା ବା

(ଭ୍ରମେ) ନନ୍ଦଙ୍କୁ ଅଟିଲ ଜଳୁ
ନବ ଯୁବତୀ ରଖ ଅନଙ୍ଗୁ ବା । ୧୦ ।

ଝାବଛନ୍ତି ଯାକୁ ବ୍ରହ୍ମାଦ ଈଶ୍ୱର ପାଦପଦ୍ମେ କର ଲୟ
ଝେଞ୍ଚ ଶ୍ରବଣ ଗଳକୁ ନସ୍ତାରଲ ଦେବତାଙ୍କୁ ଦେବସ୍ୱୟ ବା
(ଭ୍ରମ୍ନ) ଝାଣପଣ ସବୁ ଦନେ
ଝାହ୍ନ ସେହୀଡ଼ା ବୃନ୍ଦାବନେ ବା । ୧୧ ।

ଠାକୁର ଦୋଳ ଏଡ଼େ ମାୟା ହୃଦରେ ଠାବ କଲ ଏବେକାଳେ
ଠକ ଭଣ୍ଡପଣେ ନାଚଲ ଅପଣେ ଗୋପୀ ବୋଲେ ଭୁତମେଳେ ବା
(ଭ୍ରମ୍ନ) ଠାବ ନଜ ନୀଳଗିର
ଠିକେ ଦନୁଜ ବଳ ନବାର ବା । ୧୨ ।

ଡମ୍ବରୁଧର ଅଙ୍ଗେ ଧର ଶ୍ରମର ଭାଙ୍ଗିଲ ତାଙ୍କର ଦର୍ପ
ଡେଇଁ କାଳନ୍ଦରେ ମହମା ରହଲ ମର୍ଦିଲ କାଳଅ ସର୍ପ ବା
(ଭ୍ରମେ) ଡାକ ମୁରଲୀ ବଜାଇ
ଡାବ ମୋହଲ ଗୋପର ଗୋଈ ବା । ୧୩ ।

ଢଳଢଳ ଦଶେ ଶ୍ରୀରଙ୍ଗା ଅଧର ଢୋକଲ ଅମୃତ ଜାଣି
ଢମ କହୁନାହିଁ ପ୍ରାଣରୁ ଅଧିକ ନନ୍ଦସୁତ ଚକ୍ରପାଣି ବା
(ଭ୍ରମ୍ନ) ଢାଳ ଗୃହାଣୀକ ଦେଖି
ଢଳଢଳ ଦଶେ ଚକା ଆଖି ବା । ୧୪ ।

ଅଣ ଅନ୍ତୁତ ଯେବଣ ତନ ମୂର୍ତ୍ତି ଅନନ୍ଦେ ଦେଖନ୍ତି ନର
ଅନେକ ଭୋଗ ନାନା ବର୍ଣ୍ଣେ ଭୁଞ୍ଜନ୍ତି କେ ତାହା କରବ ପାର ବା
(ଭ୍ରମେ) ଅଣିଲ ଗୁପତେ ମଣି
ଅଣଦେଲା ଯେ କାଲ ଘରଣୀ ବା । ୧୫ ।

ତୁଳସୀ ମାଳ ଯା କଣ୍ଠେ ଲମ୍ବିଅଛି ତଲୋକର ମନ ଦେଇ
ତ୍ରୈଲୋକ୍ୟ ଠାକୁର ଶ୍ରୀହରି କି ନକର ତାଙ୍କ ବିନୁ ଠାବ ନାହିଁ ବା
(ତୁମ୍ଭେ) ତରକ ଚିରଲ ବକା
ତାଳବନେ ମାରିଲ ଧେନୁକା ବା । ୧୬ ।

ଥାବର ଜଙ୍ଗମ ଏ କୀଟ ପତଙ୍ଗ ହୋଇଅଛି ଯାର ହୃଦ
ଥିରକର ମାଏ ଗର୍ଭକୁ ଗ୍ରହିଁଲେ ଦେଖିଣ ହେଲେ ବିଷାଦ ବା
(ତୁମ୍ଭ) ଥିଲ ନନ୍ଦଘରେ ରହି
ଥିଲେ ହେଲେ ଯଶୋଦା ଖଣ୍ଡାଇ ବା । ୧୭ ।

ଦୀନଜନବନ୍ଧୁ ନାମ କୃପାସିନ୍ଧୁ ଦରିଦ୍ର ଲୋକଙ୍କ ଧନ
ଦାସ ସୁଦାମ ଯା ପ୍ରାଣରୁ ଅଧିକ ଫେଡ଼ିଲ ତାଙ୍କର ମାନ ବା
(ତୁମ୍ଭେ) ଦେଲ ଲଙ୍କାକରି ହାତ
ଦୁଃଖୀ ଦରିଦ୍ର ବ୍ରାହ୍ମଣ ମିତ ବା । ୧୮ ।

ଧନ୍ୟ ଶୋଭା ପାଇଁ ବିସ୍ତାର ବଇଠି ଧନ୍ୟ ଶୋଭା ତାଙ୍କ ବୁକୁ
ଧରିବ ଅବା କହିଁ ମୁନି ଧଇର୍ଯ୍ୟ ଧରଣୀ ଧର ରୂପକୁ ବା
(ତୁମ୍ଭେ) ଧଇର୍ଯ୍ୟ ମହିମା ମେରୁ
ଧରି ଗଲନ୍ତି ଦୈତ୍ୟ ହସ୍ତରୁ ବା । ୧୯ ।

ନାନାରହି ନେତ ଶ୍ରୀଅଙ୍ଗେ ମନାଇ ନୀପ ମୂଳରେ ତ୍ରିଭଙ୍ଗୀ
ନାରଙ୍କ ଜୀବନ ଶ୍ରୀ ମଧୁସୂଦନ ଗୋପାଳପୁଅଙ୍କ ସଙ୍ଗୀ ବା
(ତୁମ୍ଭ) ନାମର ଅନ୍ତ ନ ପାଇ
ନଆଁ ଗିଳିଲ ଗୋପାଳ ପାଇଁ ବା । ୨୦ ।

ପରମ ପୁରୁଷ ଦାସଙ୍କ ବିଶ୍ୱାସ ପଥଭ୍ରଷ୍ଟ ସମ୍ବଲ ନାମ
ପିତା ପଣା ନାମେ ଅମୃତ ପୂରିଛି ନାମକୁ ଶଙ୍କର ଯମ ବା

(ତୁମ୍ଭ) ପୀତବସନ କଟିରେ
ପଘୀ ରଖିଲ ରଣ ଭୂମିରେ ବା । ୨୧ ।

ଫାଉ ମୋଟ ଦେହ ଫେଡ଼ନ୍ତ ସନ୍ଦେହ ଫୁଲେ ଅଙ୍ଗ ଅଛୁ ଲୁଚ
ଫୁରୁଣା ହୋଇ ଅଯୋଧାକୁଆସ ପର୍ଯ୍ୟନ୍ତ ଭାଗିଲ ଆଶଙ୍କ ବା
(ତୁମ୍ଭେ) ଫାଲ୍‌ବଳେ ଅଟ ବଡ଼
ଫାଉ କପି ଯେନ ଲଙ୍କା ବେଢ଼ା ବା । ୨୨ ।

ବୃନ୍ଦାବନେ ପଶି ମନ୍ଦମନ୍ଦ ହସି ବଂଶୀର କରନ୍ତେ ହସି
ବୃନ୍ଦାବତୀ ନଜ କନ୍ଧରେ ବସାଇ ବୁଲିଲ କରୁଣାରାଶି ବା
(ତୁମ୍ଭେ) ବେଶରେ ରସିକ ମନ୍ତ୍ରୀ
ବସି ଚରଣେ ଦଅ ଅଲତା ବା । ୨୩ ।

ଭଲ୍ଲ ବେନ ଭୁଜ ହୋଇଅଛୁ ଭଳ ଭଗତ ଜନଙ୍କ ପାଇଁ
ଭବଗ୍ରାହ୍ମିନାଥ ଭୁଜ ଟେକିଛନ୍ତି ଶରଣ ପଶିବା ପାଇଁ ବା
(ତୁମ୍ଭଙ୍କୁ) ଭୋଳାନାଥ କରେ ପୂଜା
ବିଭୀଷଣ ଲଙ୍କେକଲ ରାଜା ବା । ୨୪ ।

ମହିମା ଅସୀମ ପ୍ରଭୁ ପୀତବାସ ମନ୍ଦାଟଘୋର ଦୁଃଖ ଫେଡ଼
ମତ୍ତ ଗଜଦନ୍ତ ଭୁଜରେ ଉପାଡ଼ି କନ୍ଧରେ କଲ ଲଉଡ଼ି ବା
(ତୁମ୍ଭେ) ମାୟୂାଧର ଆଦିକନ୍ଦ
ମାଲ ମାରି ମଥୁରାରେ ଦ୍ୱନ୍ଦ ବା । ୨୫ ।

ଯେତେ ଜୀବଜନ୍ତୁ ଯେଣେ ଥିବେ ଥାନ୍ତୁ ଜଗନ୍ନାଥରେ ଶରଣ
ଜାଆନ୍ତି ଦେଲେ ଅପଣା ଗୁରୁ ପୁତ୍ର ତିନ ଭୁବନେ ପୁରାଣ ବା
(ତୁମ୍ଭେ) ଜଗ ଗୋପପୁର ବାଟ
ଯହିଁ ରସିକ ପଣକୁ ଘଟ ବା । ୨୬ ।

ରସିକ କାଳିଅ ଗୋପୀଙ୍କ ମେଳିଅ ରଙ୍ଗେ ବୃନ୍ଦାବନେ ବନେ
ରତ୍ନ କଟାଉ ଚରଣେ ଶୋଭିବନ ରୂପ କୋଟି କାମ ଗଞ୍ଜେ ବା
ତୁମ୍ଭେ ରଙ୍ଗ କୁମ୍ଭକୁ ରସି
ରଖ ଜଳରେ ଗର୍ଭରୁ ତୃଷେ ବା । ୨୭ ।

ଲଙ୍ଗଳଧର ଠାକୁର ବଳୀବର ଲକ୍ଷେ ଲୀଳା ଶିରୋମଣି
ଲୟ ଦେବାକୁ ଯେଉଁ ପ୍ରଭୁ ଅଛନ୍ତି ଶିରରେ ସହସ୍ର ଫେଣି ବା
ତୁମ୍ଭେ ଲଙ୍ଗଳେ ଟାଡ଼ି ହସ୍ତିନା
ଲୀଳା ଭାବକୁ ଫସାର ସିନା ବା । ୨୮ ।

ବଶିଷ୍ଠ ନାରଦ ବେଦ ବ୍ୟାସ ଆଦି ସେବନ୍ତି ଯଉଁ ଚରଣ
ବାଇ କରିଇଲ ବ୍ରାହ୍ମଣ ଯୁବତୀ ବନେ ଭୋଜ ଖଆଇଣ ବା
ତୁମ୍ଭ ବକ୍ରଧରଭୁଲେ ବାଦ
ବାହୁବଳେ ଦଶଶିର ଛେଦ ବା । ୨୯ ।

ସହସ୍ରେ ନାମ ଯେଉଁ ନାମେ ବିଶ୍ରାମ ଶୁଣିଲେ ତରନ୍ତି ନର
ସାମବେଦକୁ ସନ୍ତୋଷ ଭାବଗ୍ରାହୀ ସୀତାପତି ରଘୁବୀର ବା
ତୁମ୍ଭ ସୁନ୍ଦର ପଣକୁ ରସି
ସୁମରଣ କରଲେ ସୁକେଶୀ ବା । ୩୦ ।

ଷିଦ୍ଧ ଗଣ ଜାଣି ବିକ୍ରମର ଠାଣି ସମୁଦ୍ର ତଟେ ରହଣି
ସନକ ମୁନି ଯେଉଁ ନାମେ ଶରଣ ସେବନ୍ତି ହିନ୍ଦୁଳଣୀ ବା
ତୁମ୍ଭେ ଷଣ୍ଢକୁ ଫନ୍ଦାଥେ ମାର
ଶିଶୁପାଳର ସାର ବେଭାର ବା । ୩୧ ।

ଶ୍ୟାମଳ ସୁନ୍ଦର ଦୈବକୀ କୁମର ଗୋପୀ ଚିତାକୁ ଶରଧା
ସହଜେ ଶ୍ୟାମଳ ଭ୍ରୂଲତା ଯୁଗଳ କଜ୍ଜଳେ ଗୁଞ୍ଜୁରୀବନ୍ଧା ବା

ତୁମ୍ଭେ ସନ୍ଥଜନଙ୍କ ଗୋସାଇଁ
ସଦା ହୃଦେ ଭୃତ୍ୟ ପାଦ ପାଇ ବା । ୩୨ ।

ହୀରା ମାଳା ମୋତି ହୃଦେ ଝଟକନ୍ତି ହେମ ମର୍କତ ଗଢଣା
ହରିଲ ମନ ଭାଙ୍ଗିଲ ଯୋଗୀଧ୍ୟାନ ହୃଅ ପଦକ ବିଧାନ ବା
ତୁମ୍ଭେ ହରଧନୁ ଭାଙ୍ଗି କଡା
ହୃଦେ ମାଳ ଦେଲେ ନେଇ ସୀତା ବା । ୩୩ ।

କ୍ଷୀର ପାନକଲ ମାଣିକ୍ୟ ଦେଇଣ କ୍ଷିତିପତି ରଘୁନାଥ
କ୍ଷମା ସାଗର ଠାକୁରଙ୍କୁ ଭଜିଣ ବିପ୍ର କପିଳା ମୁକତ ବା
ତୁମ୍ଭେ ଛଛନେ ଫେଡ଼ ସଙ୍କଟ
କ୍ଷେମେ ରହିଲ ବଟ ନିକଟ ବା । ୩୪ ।



# କଳସା ଚଉତିଶା

---

କୌଣସି ଗ୍ରନ୍ଥ ଅଙ୍କ ପୋଥି ମଧ୍ୟରୁ ଏ ଚଉତିଶା ପ୍ରାପ୍ତ ହୋଇଅଛି । କଳସା ବାଣୀରେ ଗାଇବ ବୋଲି କେତେ ଛନ୍ଦ ଉପରେ ଲେଖା ହୋଇଥାଏ, କିନ୍ତୁ କଳସା ଗୀତ କଣ ଜାଣିବାର ଉପାୟ ନ ଥାଏ । ଏହିପରି ଅନେକ ବାଣୀର ନାମ ଦେଖାଯାଏ କିନ୍ତୁ ସେଗୁଡ଼ିକର ମୂଳ ଗୀତ ମିଳେ ନାହିଁ, ଫଳରେ ମାହିତ୍ୟିକ ମନରେ ଯେଉଁ ଅବଶୋଷ ରହିଯାଏ ତାହା କଥାରେ ପ୍ରକାଶ କରି ହେବନାହିଁ । ଯାହାହେଉ କଳସା ମୂଳ ଗୀତ ମିଳିଲା । ଅନ୍ୟାନ୍ୟ କେତେକ ବାଣୀର ମୂଳ ଗୀତ ମଧ୍ୟ ମିଳିଅଛି । ରସକୁଲ୍ୟା ବା ରସକୋଇଲ ବାଣୀର ମୂଳ ଗୀତ ମଧ୍ୟ ଏ ଗ୍ରନ୍ଥରେ ସନ୍ନିବେଶିତ ହୋଇଅଛି । କଳସା ଗୀତ ଅତି ପୁରାତନ, ପ୍ରମାଣ ମିଳିଅଛି ସାରଳା ଦାସଙ୍କ ମହାଭାରତ ଠାରୁ ମଧ୍ୟ ଏହା ଅଧିକ ପ୍ରାଚୀନ । ଏହାର ନଜନ୍ତ୍ରୁଙ୍କର ସରଳ ଭାଷା ଏକାବେଳେକେ ଅନନୁକରଣୀୟ । ଆଉ ଶିବବିବାହ ବର୍ଣ୍ଣନରେ କବି ବଳ ଦାସ ଯେଉଁ ଅନନ୍ୟପୂର୍ବ ରସିକତା ବା ( Humour ) ଦେଖାଇଅଛନ୍ତି ତାହା ମଧ୍ୟ ପୁରାତନ ଓଡ଼ିଆ ସାହିତ୍ୟର ରଙ୍କର ପ୍ରକୃଷ୍ଟ ପ୍ରମାଣମାନଙ୍କରୁ ଅନ୍ୟତମ ।

କହନ୍ତି କାମିନୀ ଶୁଣ ହେମନ୍ତଦୁଲଣୀ
କାହିଁ ବରେ ବରିଲେ ଭୁମ୍ବର ପିଢାମଣି
କୁଳ ମୂଳ ଗୋତ୍ର ଆଦି ନାହିଁ ଜାଣ ତାର
କନକବେଦୀରେ ବୁଢ଼ା ବସିଛି ମଧ୍ୟର । ୧ ।

ଖୁଁ ଖୁଁ କାଶ ଯାହାସେଣି ପେଲୁଅଛି ଧରି
ଖର ନିଶ୍ୱାସ ବୁଢ଼ାର ମ.ଥଲାଗେ ଭୁଇଁ
ଖଣ୍ଡିଆ ଯୋଗୀର ସଙ୍ଗେ ନାହିଁ ଯାନ ତାର
ଖଣ୍ଡିଆ ବଳଦ ବୁଢ଼ା ବାହନଛି ପାଖର । ୨ ।

ଗୋଡ଼ ହାତ ଷଣ ଫୁଲ ଗଳୁଛି ନୟନ
ଗଣ୍ଡସ୍ଥଳେ ଲମ୍ବଇ ମୁହୁସ୍ତି ଦରଶନ
ଗ୍ୟାନ ଭ୍ରଷ୍ଟ ହୋଇଲଣି କେବଳ ତା ମତି
ଗୁଣ ଲକ୍ଷଣ ବୁଢ଼ାର ନାହିଁ ତଥି ଗତି । ୩ ।

ଘର ଦ୍ୱାର କେବଣ ଦେଶରେ ତଥ୍ୟ ନାହିଁ
ଘଟାଇଲା ବିହି ଆଣି ଏମନ୍ତ କସାଇ
ଘଣ୍ଟ ଘଣ୍ଟ ହୋଇ ଜାଲ ବହୁଛି ଭୁଣ୍ଡର
ଘନ ଜଟା ଜୋଡ଼ାଏକ ବାନ୍ଧିଛି ମୁଣ୍ଡର । ୪ ।

ନ ଚଳଇ ମନୁଷ୍ୟ ସେ ନ ଦେଖେ ନୟନ
ନିକଟେ ଡାକିଲେ ନ ଶୁଣେ ତା ବେନି କର୍ଣ୍ଣ
ନଖ ମୁଖ ଚକ୍ଷୁସ୍ଥାନ ପଚିଲା ଉପର
ନୁଆ ଖଣି ଖଣା ପ୍ରାଏ ଦିଶୁଛି ଉଦର । ୫ ।

ତର୍ମୈକ ମାଡ଼ିଣ ବୁଢ଼ା ବସିଛି ମଧ୍ୟେଣ
ଚଉପାଶ ବେଢ଼ିଛନ୍ତି ଦେବତା ବ୍ରାହ୍ମଣ
ଚକୋରି ବୁଢ଼ାକୁ ଦେଖି ଚକିତ ହୋଇଲୁ
ଚିନ୍ତା ସାଗରରେ ସଖି ! ନିଶ୍ଚେ ବୁଡ଼ିଲୁ । ୬ ।

ଛନ୍ନ ଅଙ୍ଗେ ଛିଣ୍ଡା କନ୍ଥା ଲାଗିଛି ତାହାର
ଛାର ପାଉଁଶ ଜୋଡ଼ାଏ ଲେପିଛି ଶରୀର
ଛନ୍ଦିଅଛି ସର୍ପମାଳ ମୁଣ୍ଡେ ଆଭରଣ
ଛନେକେ ଭେଳକି ବୁଢ଼ା ଲଗାଇଲା ଜାଣି । ୭ ।

ଜଙ୍ଗମକୁ ପ୍ରାପତ ହୋଇଲୁ ଚନ୍ଦ୍ରମୁଖି !
ଯାହା ତୋର କପାଳରେ ବିହି ଅଛି ଲେଖି
ଯୁବାକାଳେ ଯଉଁ ଯୋଗ ଭୁଞ୍ଜିବୁ ନା ଯାହା
ଜାଣି ଜାଣି ଜଙ୍ଗମ ଗୋଠାକୁ ହେଲୁ ବାହା । ୮ ।

ଝୁମ୍ପୁ ଝୁମ୍ପୁ ବାଜେ ଘଣ୍ଟି ପାଗୁଡ଼ି ଜୋଡ଼ାଏ
ଝମକୁଣି ଅର କରେ ତ୍ରିଶୂଳ ଗୋଟାଏ
ଝୁଲି ହୋଇ ଝିଙ୍କି ହୋଇ ପଡ଼ୁଛି ଚଳାଇ
ଝିଅ କି ନାତୁଣୀ ପ୍ରାଏ ଦିଶିବୁ ଗୋ ତୁହି । ୯ ।

ଞସଢେଣ କହେ କଥା ଞଳୁଛିଣ ଦାନ୍ତ
ନ ଅସର ବାଣୀ ଛାର ଦୁହିଁଙ୍କ ଏ ଅନ୍ତ
ଞଣ ଦାଢ଼ି ରୁଚ ଛାଲୁ ନ ମିଳେ ଭଣ୍ଡାର
ଞଣାକାଳେ ଯେ ଦେଖିଲେ ଭସ୍ମେ ଭର ପାର । ୧୦ ।

ଟଳ ଟଳ ହୋଇ ଟେକି ବସି ନ ପାରଇ
ଟାଙ୍କୁଅ ଗାଲ ପାକୁଅ ଦାନ୍ତ ଅଛ ନାହିଁ
ଟକ ଟକ ହୋଇ ତା ଲାଗଇ ବେନି କଣ୍ଠି
ଟାଂକସ୍ତ ନମିଷ୍ଟି ସେ ଅଛୁ ତ ଅପାବନ । ୧୧ ।

ଠୂଳ କରଥିବା ଭିକ୍ଷା ମାଗିବାର ଧନ
ଠକଥିଲା ଦେବ ବୋଲି ହେମନ୍ତ ରାଜନ
ଠକର ସ୍ୱଭାବ ସେ ଗୋ ଲଗାଇଲା ଆଣି
ଠାବେ ହେଲୁ ନାଶଗଲା ହେମନ୍ତଦୁଲଣୀ । ୧୨ ।

ଡାକଏ ବଜାଉଅଛ ଥାଳେକ ଢୋଲର
ଡଙ୍ଗର ଡ଼ାଙ୍ଗୁଅ ଧେନ କରବୁ ଗୋ ଘର
ଡମ୍ବରୁ ଧରକୁ ସେବା କଲୁ ପରମାଣେ
ଡ଼ଙ୍ଗର ବର ପାଇଲୁ ଦେଲେ ଶୂଳପାଣେ । ୧୩ ।

ଢୋର ଢପୁହିଙ୍କ ମାଗୋ ବଳାଇଲୁ ଚଉ
ଢୋକଣ୍ଡ ଯୋଗୀଙ୍କ ମାଗୋ ହୋଇଲୁ ପ୍ରାପତ
ଢମାଳ ନକର ମୁଁ ଯେ କହୁ ଅଛି ସତ
ଢ଼ାଳେ ହେଲୁ ନାଶ ଗଲା ହେମନ୍ତ ଦୁହିତ । ୧୪ ।

ଅଣାଇଲେ ରାଜ୍ୟେ କାହ୍ନିଁ ବରେକ ବରଣ
ଅଣ ମନୁଷ୍ୟ ଯେ ସେ ଅଛୁ ତ ଅପାବନ

ଅଣଖ ସାଉଲେ ମାଏ ଝିଏ ଦୁହେଁ ହୋଇ
ଅଣ ଉହାଡରେ ଶୀଘ୍ରେ ଦେଖାଇଲେ ନେଇ । ୧୫ ।

ତୀକ୍ଷ୍ଣ ଶରବର ବାଲୀ ବାଜନ୍ତି ହୃଦର
ତଡ଼ତେ ପଡନ୍ତି ଭଳ ନଟ୍ଟେ ତା ମନ୍ଦର
ତକ୍ଷଣେ ଟେକି ଧଇଲେ ତାହାଙ୍କର ଦାସୀ
ତୁରତେ ମିଳିଲେ ମାଏ କଣ୍ଠରେ ତା ଆସି । ୧୬ ।

ଥର ହର କର ମାଏ ବୋଲନ୍ତି ବଚନ
ସ୍ଥିର କର ମନ ମା ଗୋ ! ନୁହେ ଅଚେତନ
ଥିଲ ଏତେକାଳେ ମୋର ଦୁଲଣା ହୋଇଣ
ଥନ ଯଉବନ କାଳେ ଦେଉଛୁ ଜୀବନ । ୧୭ ।

ଦଇନ କରି କହୁଛି ଶୁଣ ମୋର ମାଏ
ଦନ୍ତେ ତୃଣ ଧରଣ ଓଳଗଇ ପାଦ୍ୟେ
ଦରିଦ୍ର ହୀନ ବୁଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ । ୧୮ ।

ଧରି ଧର ହୋଇ ମାଏ ଝିଅ ବୋବାଇଲେ
ଧାଇଁ ମୁହୁସୁଲୀମାନେ ଚହଳ ପାଇଲେ
ଧାଇଁ ଆସି ତତକ୍ଷଣେ ମିଳିଲେ ରାଜନ
ଧର୍ମ ପୁଣ୍ୟ କାଳେ କପାଁ କରୁଛ ରୋଦନ । ୧୯ ।

ନାହିଁକି ସଂସାର ମଧ୍ୟେ ରାଜାର କୁମର
ନିର୍ଲଜ ବୁଢ଼ାକୁ ସ୍ୱନସା କି କଲ ବର
ନୋହିଲେ ବୁଢ଼ିବୁ ମାଏ ଝିଏ ଦୁହେଁ ହୋଇ
ନୋହିଲେ ମରିବୁ ସ୍ୱହସ୍ତରେ ବିଷ ଖାଇ । ୨୦ ।

ପଟ୍ଟ ଯେନ ମାଣିକ୍ୟ ମୁକୁତା ସୁନ୍ନା ନାହିଁ
ଯୋଡ଼୍ ଯୋଡ଼୍ ଜୀବନ ପର୍ଯ୍ୟନ୍ତ ରଖା ହୋଇ
ପିଅର ଜନନୀ ତୁମ୍ଭ ଜୀବନ ଧନ ଚ
ପାଙ୍କୁଅ ବୁଡ଼ାକୁ ଦେଇ ଯେନ ଲୋହ ବସ୍ତ୍ର । ୧୧ ।

ଫରମାଣ ଦେଇଛନ୍ତି ହେମନ୍ତ ରାଜନ
ଫାଇ କେବେ କହୁବା ଗୋ ସେହୁ ବଡ଼ଜଣ
ଫଲେଣ ଜାଣିବା ପଛେ ତାହାଙ୍କର ଗୁଣ
ଫଂରଙ୍ଗ ସେବିଲେ ଗୌରୀ ପାଇବ କାରଣ । ୧୨

ବିସ୍ମର ନ କର ମାଏ ଝିଏ ତୁହେଁ ତୁମ୍ଭେ
ବିକଳ ମନରୁ ଗୁଢ଼ି କହୁଅଛୁଁ ଅମ୍ଭେ
ବ୍ରହ୍ମା ବିଷ୍ଣୁ ଦେବତାଏ ଛନ୍ତି ତାଙ୍କୁ ବେଢ଼ି
ବଡ଼ ଭାଗ୍ୟବନ୍ତ ଗୌରୀ ପୁଣ୍ୟେ ଅଛ ବଢ଼ି । ୧୩ ।

ଭାଲପଟେ ଲେଖନ ଯା କରଛନ୍ତି ବିଧାତା
ଭଲ ଭାଗ୍ୟବନ୍ତ ଗୌରୀ ଅମ୍ଭର ଦୁହିତା
ଭୋଜନର ବେଳେ ରାଣୀ ମିଳିଲେକ ଆସି
ଭଢରେ ମଟଣାହି ସଣ୍ଢା ରଖଣ କରସି । ୧୪ ।

ମହାଦେଉ ମନବ୍ୟଥା ଛଡ଼ାଇ ରାଜନ
ମିଳିଲେ ଯେ ସର୍ବଜନ ବଭ୍ରାର ଅସ୍ଥାନ
ମଙ୍ଗଳଣ କଲେ ତହିଁ ହଳଦୀ ଚନ୍ଦନ
ମଙ୍ଗଳ ମହୁରୀ ଶଙ୍ଖ ବାଜେ ଘନ ଘନ । ୧୫ ।

ଯୁବତୀ ସକଳ ମିଳି ହୁଳହୁଳି ଦେଲେ
ଜଗମୋହନାଙ୍କ ଦ୍ରବ୍ୟ ବେଶ କରାଇଲେ

ଜାଇ ଫୁଲ କନଅର ଖୋସାରେ ଖୋସିଲେ
ଯତନେ କସ୍ତୁରୀ ଟିକା କପାଳରେ ଦେଲେ । ୧୬ ।

ଟହ ଓଢ଼ିଅଣି ଚନ୍ଦ୍ର ମଥାରେ ସୀଉନ୍ତ
ଝିମ ଅଭଖେକ ଚୂଡ ନାଁସେ ଗଜମୋତି
ରୁଣୁ ଝୁଣୁ ବାଜୁଅଛି ପଦ୍ମରେ ନୂପୁର
ରାଜୀବଦଳ ଲୋଚନେ ରଞ୍ଜିଲେ କଜ୍ଜଳ । ୧୭ ।

ଲତାବଳ ପାଟେ ପିନ୍ଧି ନେତେ ଉପୁରାଣି
ଲାବଣ୍ୟ ଚନ୍ଦ୍ର-ବଦନୀ ଲକ୍ଷେ ଲକ୍ଷ୍ମୀ ଗୁଣ
ଲବଣଚଉଁରୀ ପୂଜା ଆଣି ବଢ଼ାଇଲେ
ଲଳତେ ମଙ୍ଗଳ ଗୀତ କାମିନୀ ଗାଇଲେ । ୧୮ ।

ବ୍ରହ୍ମା ଅର୍ଘ୍ୟ ହୋଇଣ ବେଦୀରେ ବସିଲେ
ବରଙ୍କୁ ସେ ଜନଂଣ ଦଶ ତୋଳ ବସାଇଲେ
ବାସବର୍ଗ ବନ୍ଧୁ ବାକ୍ୟ ଅସରଳା ସୁତା
ବସିଂଲେକ ଝମ୍ପାମାଡ଼ି ବାଲୀ ଦେନ୍ତ ପିତା । ୧୯ ।

ଶିରରେଣ ବାନ୍ଧଲେ ମୁକୁଟ ପଞ୍ଚଶାଖା
ଶୋଇପଡ଼ି ବୁଢା ଖାଶୁ ଖାଶୁ ଗଣ୍ଡ ମୂର୍ଚ୍ଛା
ଶାଶୁ ଅଦ ସମସ୍ତେନ୍ଦେଁ ବୋବାଳ ଛଡ଼ିଲେ
ସଚେତ ପାଇଲା ବୁଢ଼ା ତୋଳ ବସାଇଲେ । ୨୦ ।

ସନ୍ତୋଷେ ହସ୍ତ ଯୋଡ଼ିଣ କଲେଣ ସେ ନାରୀ
ସତ୍ଵରେଣ ଦେବତାଏ ଗଲେ ଯେଝା ପୁରୀ
ସନ୍ତୋଷେଣ ନାରୀ ମିଳ ଜୁଆ ଖେଳାଇଲେ
ସତ୍ଵରେଣ ବରକନ୍ୟା ବେଦୀରୁ ଉଠିଲେ । ୨୧ ।

ସମସ୍ତେ ବସିଣ ପଞ୍ଚ ପ୍ରାସାଦ ସାରଲେ
ସଖୀସଙ୍ଗାଭୁଣୀମାନେ ମହ୍ଣଶଯ୍ୟା କଲେ
ସୁରଗଣେ ବରକନ୍ୟା କରୁଛନ୍ତି ଭାବ
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ । ୩୨ ।

ହେମନ୍ତର ରାଣୀ ଦେଖି ସନ୍ତୋଷ ହୋଇଲେ
ହୀନ ପରପଞ୍ଚ ବେଶ ଯନ୍ତୁଂ ପକାଇଲେ
ହୋଇଲେ ସନ୍ତୋଷ ଯେ ସକଳ ଲୋକ ଦେଖି
ହାସ୍ୟ କରୁଛନ୍ତି ସଖୀସଙ୍ଗ'ଭୁଣୀ ଦେଖି । ୩୩ ।

ଛନ୍ଦେ ଚଉଠି ସା'ର କାଦ ଖେଳ ଗଲେ
ଛ ପାଦ ଅଷ୍ଟ ମଙ୍ଗଳ ହୁଛବ ସାରଲେ
ଚିତ୍ତପଢ ଠାକୁର ସେ ଲିପିଲା ସେ ସ୍ଥିତ
ନୃତ୍ୟ ରୁଦ୍ର ବଳ.ଦାସ କଳସା ପଢନ୍ତି । ୩୪ ।

---

# ରସକୁଲ୍ୟା ଚଉତିଶା

ଏ ଚଉତିଶା ରସକୁଲ୍ୟା ବା ରସକୋଇଲ ବାଣୀର ମୂଳ ଗୀତ । କବି ଦାମୋଦର ଚଉତିଶାର ନାମ ସାର୍ଥକ କରିଅଛନ୍ତି, ଅତ ଉତ୍କଳ ସାହିତ୍ୟରେ ରସକୁଲ୍ୟା ପରି କଳିତ କବିପ୍ରିୟ ବୃତ୍ତର ସେ ଯେ ପ୍ରବର୍ତ୍ତକ ଏହା ତାଙ୍କ ଅନନ୍ୟ ସୁଲଭ ପ୍ରତିଭାର ପ୍ରକୃଷ୍ଟ ନିଦର୍ଶନ । କବି ଶ୍ରୀ ଚୈତନ୍ୟଙ୍କ ପୌତ୍ରମାନଙ୍କର ମଧ୍ୟ ପୂର୍ବବର୍ତ୍ତୀ କାରଣ ସେମାନେ ମଧ୍ୟ ରସକୁଲ୍ୟା ବୃତ୍ତ ନିଜ କୃତିମାନଙ୍କରେ ବ୍ୟବହାର କରିଅଛନ୍ତି । ଏହେ ପୁରାତନ ହେଲେ ମଧ୍ୟ ଚଉତିଶାର ଭାଷା ଆଧୁନିକ ଭାଷାଠାରୁ ତ କୌଣସି ଅଂଶରେ କମ୍ ପରିମାର୍ଜିତ ନୁହେ । ଏଥିରୁ ତହିଁରେ ଲୋକେ ନୈସର୍ଗିକ ସାରଲ୍ୟ ପରିପୂର୍ଣ୍ଣ ଭାବ ଯାହା ଅଧୁନିକ କବିତାର ଦେହରେ ଅତ୍ୟନ୍ତ ଦେଖିବାକୁ ମିଳେନାହିଁ । ବଙ୍ଗାନୁକରଣ ଯୁଗରେ ପ୍ରଥମ ଚଷାର ଗଢ଼ି ବୋଲି ଅଧିକ ହୋଇଥିଲା ରସକୁଲ୍ୟାଦି ଚଉତିଶାମାନଙ୍କ ସହିତ ସେ କୌଣସି ନବୀନ କବିତାର ତୁଳନାତ୍ମକ ପାଠରୁ ତାହା ସ୍ପଷ୍ଟ ପ୍ରତିପନ୍ନ ହେବ । ଯେଉଁମାନେ ପ୍ରଥମରେ ଓ ତାହାର ନାମ ଚଳାଣର ଅଧିକାର ଲେଖି ନାନା ଯୁକ୍ତି ମତ ବ୍ୟକ୍ତ କରୁଅଛନ୍ତି ସେମାନେ ରସକୁଲ୍ୟା ଅବିସ୍ମରଣୀୟ କରି ପାରିବେ କି ?

କହଇ ରାଧା ସଖୀ ଦୂତିକାକୁ,
କଦମ୍ବ ମୂଳେ ଦେଖିଲି କୃଷ୍ଣଙ୍କୁ
କଳା କଳେବର ରଙ୍ଗା-ଅଧର
କପଳେ କସ୍ତୁରୀ ଚିତା ସୁନ୍ଦର ସେ,
କୁବଳୟ ଫୁଲ ନାହିଁ ଯେ
କାମ ବିକାର      କଲକ ପ୍ରାଣବନ୍ଧୁ
ଦେଖି ସୁଧାନନ୍ଦ ହାସେ ଯେ । ୧ ।
ଖୋସିଛି ଶିରେ ମୟୂର ଶିଖଣ୍ଡ
ଖଣ୍ଡ ସଘନରେ ଶକ୍ର କୋଦଣ୍ଡ
ଖଞ୍ଜି ଅଳଙ୍କାର ଗୁଞ୍ଜର ମାଳ
ଖଞ୍ଜି ପୁଞ୍ଜି ପୁଞ୍ଜି କାଞ୍ଚନ ମାଳ ସେ ।
ଖିଳ ବ୍ରହ୍ମାଣ୍ଡ ଠାକୁର ଗୋ
ଖୀନ ନୟନ      ଅପାଙ୍ଗ ଶରେ ତନୁ
ଖଣ୍ଡ ଖଣ୍ଡ କଲା ମୋର ଗୋ । ୨ ।

ଗଣ୍ଡସ୍ଥଳେ ଲୁଚଲ କୁଣ୍ଡଳ ବେନି
ଧ୍ୟାନ ଧ୍ୱଂସ ହୋଏ ଦେଖି ସଜନି !
ଗୋବିନ୍ଦ ଗଳାରେ ପ୍ରବାଳକଣ୍ଠି
ଗୋପସୁତ ସଙ୍ଗେ କରନ୍ତି ଗୋଷ୍ଠି ସେ,
ଗଜମୁକ୍ତାର ହାର ଗୋ ।
ଗଳାରୁ ଯାନୁ ପଦପଦ୍ମେ ଲମ୍ବଇ
ବନ କୁସୁମର ମାଳ ଗୋ । ୩ ।

ଘଟଣି ସୁନ୍ଦର ତ୍ରିଭଙ୍ଗୀ ଅଙ୍ଗ
ଘନ ଘନ ବଂଶୀ ବାଜେ ଶ୍ରୀରଙ୍ଗ
ଘୋଟିଲା ଅନ୍ତରେ ଅନଙ୍ଗ ଜ୍ୱର
ଘୂମାଇ ପାରିଲା ମୋର ଶରୀର ସେ,
ଘାଉକଲା ରଙ୍ଗବର ସେ
ଘାଉଅ ହରଣୀ ପ୍ରାୟେ ମୁଁ ହୋଇଲି
ଶୁଣି ତା ବେଣୁ ସ୍ୱର ଯେ । ୪ ।

ନୟନେ ତା ରୂପ ଦେଖିଲି ଯାହା
ନ ପାରଇ କହି ବଚନେ ତାହା
ନ ରୁଚଇ ମୋତେ ସଦନ ସୁଖ
ନ ଦେଖି ଦେଖିଲି କଳା ଶ୍ରୀମୁଖ ସେ
ନିବେଦନା ମୋର ସେନ ଗୋ
ନଟେ ପ୍ରାଣବନ୍ଧୁ ଦେଇ ମୋତେ ରଖ
ଅଜନ୍ମି ତୋର ଅଧୀନ ଗୋ । ୫ ।

ଚଳ ସହଚରି ! ଶୁନ୍ଦ ଚହଟ !
ଚତୁର୍ବର୍ଗଦାନୀ ନାଥ ନିକଟ

ଚଞ୍ଚଳାପତିଙ୍କ ପାଶେ ଜଣାଇଁ
ଚଣ୍ଡେ ଯେନଅ ପବଣ୍ଡ ମଣାଇ ସେ,
ଚତୁରାନନ ଯା ଦାସ ଗୋ
ଚନ୍ଦ୍ରଶେଖର ପଲକ ନ ଟଳଇ
ଗ୍ରହିଁ ଚକ୍ରଧର ବେଶ ଗୋ । ୬ ।

ଛୀନ ଉଦର ଛୀନ ରୋମାବଳୀ
ଛନ୍ନ ହୋଇବେ ଦେଖି ସୁରବାଳୀ
ଛାଡବେ ପତି ସୁତ ଗୃହ ବାସ
ଛଣେ ନ ଛାଡ଼ିବେ ଶ୍ରୀକୃଷ୍ଣପାଶ ସେ
ଛଟକେ ତା ରୂପ ଦେଖି ଯେ
ଛର ନାଲଷଣୀ ଛାଡ଼ି ମୁଁ ଅଇଲି
ଦୋଷ ଛମାକର ସଖି ଗୋ । ୭ ।

ଜମ୍ବୁନଦ ଜିଣି ପୀତବସନ
ଦାମିନି ଜଳଦ ମଧ୍ୟେ ଯେସନ
ଜଡିତ ବେନ ଫର ହର ଉରେ
ଯୋଗୀନ୍ଦ୍ରବୃନ୍ଦ ଦେଖି ଯୋଗ ଛାଡ଼େ ସେ
ଯଉଁ ଶୋଭା ଜଗବନ୍ଧୁ ଯେ
ଯୁବତୀ-ଜୀବନ କେତେକ ମାତର
ଦେଇ ରଖ କୃପାସିନ୍ଧୁ ଯେ । ୮ ।

ଝିମଣ୍ଡକେ ଦୃଷ୍ଟି ତହିଁ ରଖିଲା
ଝାଢ଼କାରେ ଝୁଣ୍ଟବନେ ମିଳିଲା
ଝସକେତନର ପିଅର ପାଶ
ଝଗତ କହଇ ରାଧାସନ୍ଦେଶ ସେ

ଝୁରୁଅଛି ପ୍ରାଣସଖୀ ଯେ
ଝୀନପଟନୀ ତା' ପାଷାଣରୁ ଗରୁ
ଝଡ଼ପଡ଼େ ବେନି ବାହା ଯେ । ୯ ।

ନୟନରୁ ନୀର ନ ରହେ ତାର
ନିରନ୍ତରେ ନାମ ଜପଇ ତୋର
ନ ରୁଚଇ ଅନ୍ନ ନ ମାଡ଼େ ନିଦ
ନନ୍ଦନ ଫୁଲଶରେ ତନୁ ଭେଦ ସେ
ନ ଜୀଅଇ ତୋ ନ ଗଲେ ଯେ
ନରେ ତିଅ ହତ୍ୟା ଦୋଷକୁ ପାଇବୁ
ନାଗ୍ର ଶିରୋମଣି ମଲେ ଯେ । ୧୦ ।

ଟାହ ପରାୟେ ନ ମଣ କହ୍ନାଇଁ
ଟାକ ବସିଥିବ ତୋହେ ଅନାଇଁ
ଟଳ ପଡ଼ିବାକୁ ଅଛି କେବଳ
ଟାଣି ମନସିଜରାଜ ପ୍ରବଳ ଯେ
— ଟାଣି ବିନ୍ଧେ ପଞ୍ଚବାଣ ଯେ
ଟକାଏ ଉପ୍ରୋଧ ନାହିଁ ନା ତାହାର
କରୁଅଛି ରଣଭଙ୍ଗ ଯେ । ୧୧ ।

ଠାକୁରେ ଜାଣିଲେ ରାଧାସନ୍ଦେଶ
ଠିକ କହୁଛନ୍ତି ଦୂତିକା ପାଶ
ଠିକ ନୋହୁ ଅମ୍ଭେ ବାକ୍ୟର ଯୋଇ
ଠକ କଥା କି କେ କହୁ ବୁଝାଇ ଯେ
ଠାକୁରାଣୀ ଏଣେ ବଡ ସେ

ଠାକୁର ଭଣ — ଭ୍ରାନ୍ତକ ଜେମାଦେଈ
ଆମ୍ଭେ ଜାଣୁ ଶିଶୁଖେଳ ଯେ । ୧୨ ।

ଡଗାଇ କେତେ କହୁ ବନମାଳୀ
ଡେଇଁ କାଳନ୍ଦୀରେ ମର୍ଦ୍ଦିଲୁ କାଳୀ
ଡଂସିଲା ଅଙ୍ଗେ ଭୁ ନାଶ
ଡଗାଇ କହୁ ମୁଁ ବାଳୁତ ବିଷ ଯେ
ଡରିଲୁ ନାହିଁ ଇନ୍ଦ୍ରକୁ ଯେ,
ଡୋଳେ ଦେଖିଲୁ ଗିରିବର ଧରଣ
ରଖିଲୁ ଗୋପବୃନ୍ଦକୁ ଯେ । ୧୩ ।

ଢମ ପଣ୍ଡା ଏବେ ନ ମଣ ଢାଳେ
ଢଳ ପଡ଼ିବ ଜୀବ ଯିବାବେଳେ
ଢୋକିବ ଯେବେ ତୋ ଅଧରୁ ସୁଧା
ଢଳ ନ ପଡ଼ିବ ଜୀଇବ ରାଧା ଯେ
ଢାଳେ ହୋଇଅଛୁ ଦୁଃଖୀ ଯେ
ଢଳଢଳ ସୁଧା ଢୋକନ୍ତି ପିଇଲେ
ଜୀଇବ ସେ ଚନ୍ଦ୍ରମୁଖୀ ଯେ । ୧୪ ।

ଅଣହେଲା ଏବେ ନ କର ହରି !
ଏଣୀ ନୟନୀ ନଷ୍ଟେ ଯିବ ମରି
ଅଣଅପରାଧୀ ରାଧିକା ସଖି
ଅନଙ୍ଗବାଣେ ବାରେ କର ରକ୍ଷି ସେ
ଅଣମନୁଷ୍ୟରମଣୀ ହେ ।
ଅମୂଲ୍ୟ ଚିଭୂଲୀ ସୁଖେ ଭୋଗ କର
ଅଣଦେବ ଏହୃଯଣି ହେ । ୧୫ ।

ତୁମ୍ଭେ ଯେବେ ନିଷ୍ଠେ ନ ଯିବ ଦୂର
ତମିତ ଅର୍ଦ୍ଧେ ଆଣିନି ସୁନ୍ଦରୀ
ତୋଷ ହୋଇ ଆଜ୍ଞା ଦିଅ ଶ୍ରୀରଙ୍ଗ
ତ୍ୱରିତ ହୋଇ ଲଭ ସଖୀସଙ୍ଗ
ତୁରତେ ଆସିବ ତେବେ ଯେ
ତ୍ରିଲୋଚନ ରିପୁ— ତାପକୁ ନ ଡର
ତୋ ତନୁ ଲଭିବ ଯେବେ ଯେ । ୧୬ ।

ଥିରେଣ ନାଗର କହେ ମନ ହସି
ଥିବୁଁ ଅମ୍ଭେ କୁଞ୍ଜକୁଟୀରେ ବସି
ଥିବେ କେହି ନାହିଁ ତାଙ୍କ ସଙ୍ଗର
ଥାଇ ଦେନ ଆସ ନଁ ଅବର ସେ ।
ଥିବୁ ପଡ଼ିଜନ ଜାଗି ଗୋ
ଥାଇ ତୁ କଣି ଅଙ୍କେ ଦେନା ଆହିରୁ
ଶୋଇଲେ ସେ ନିଦ ଭାଗି ପେ । ୧୭ ।

ଦସ୍ମାନାଥବାଣୀ ଶୁଣି ଦୂତିକା ।
ଦହି ଜମୁନାଦତାକୁଁ ଅଧିକା
ଦୁଃଖ ଜାଣି ସଖୀ ବେଗେ ଅଇଲା
ଦ୍ୱିନଦଗାମିନୀ ପାଶେ ମିଳିଲା ସେ
ଦେଖିଣ ଦୂତିକାମୁଖ ଯେ
ଦଗମ୍ବରରିପୁ ତାପକୁ ନ ଡର
ଲଭିଲା ପରମ ସୁଖ ଯେ । ୧୮ ।

ଧର ଚରଣ ପଙ୍କଜଇ ରମ୍ଭା
ଧରଣୀଧର କ ବୋଇଲେ ସହି !

ଧ୍ରୁବ କରି କହ ସତ୍ୟ ବଚନ
ଧ୍ରୁବ ଆସିବେ କି ପଦ୍ମନୟନ ସେ
ଧୀରେ କହ ସହଚରି ! ସେ
ଧରଣୀଧରଙ୍କ ଯେତେ କଥାମାନ
କହିଲା ବହୁତ କରି ସେ । ୧୯ ।
ନ ଜାଣୁ ଅମ୍ଭେ ପୁରୁଷର ଭାବ
ନାହିଁ ଟେକେ ଜାଣୁ କିଶୁ ସ୍ୱଭାବ
ନାନା ପ୍ରକାର ମଣାଇଁ କହିଲ
ନଷ୍ଟେ ସୀତ୍କାର କରି ବୋଇଲା ସେ
ନ ଆସିବେ ତୁମ୍ଭ କାନ୍ତ ଗୋ
ନାହିଁ ଅର୍ଦ୍ଧେ ଯେବେ ଦେବି ମୁଁ ତୁମ୍ଭଙ୍କୁ
ତୁଣ୍ଡେ ଥିବେ ଶିଖାପଢ଼ ଗୋ । ୨୦ ।
ଫୁଲକଳ୍ପ ଜନ ଶୁଣି ଏ ବାଣୀ
ପ୍ରସନ୍ନ ମୁଖ ବିଦ୍ଧଂସ ନଳିନୀ
ପ୍ରାପତ ନାଥ କି ଦରିଦ୍ର ହସ୍ତ
ପଦ୍ମବନେ କି ଉଦେ ଦିନନାଥ
ପଶୁରଇ ନାଶି କେତେ ଗୋ
ପାଶ ପଡ଼ିଜନ ନିଦ୍ରା ଗଲେ ପକ୍ଷୀ
ସଜ କରାଇବୁ ମଣ୍ଡପ ଗୋ । ୨୧ ।
ଫୁରୁଣା ହୋଇ ନାଇ ପାଟେ ପିନ୍ଧି
ଫେଡ଼ି କବରୀ ଥାଳ କରି ବାନ୍ଧି
ଫାଡ଼ି ଅଳଙ୍କାର ଅଙ୍ଗେ ଭୂଷଣି
ଫୁଲ ଚନ୍ଦନ କର୍ପୂର ଖଞ୍ଜିଣ ସେ

ଯାଇ କୁଙ୍କୁମ ଲେପନ ଯେ
ଫୁଲ-ଧନୁର୍ଧର ରାଜା ପଟଙ୍ଗ ଅଟ
ହୋଇବ ପୁରଶ୍ଚରଣ ଯେ । ୧୧ ।

ବେଳ ଜାଣି ବେନି ସଖୀ ବାହାର
ବେଗରେ ରଜନୀ ଅର୍ଦ୍ଧ ଅନ୍ଧାର
ବୃନ୍ଦାବନେ ବେଗେ ପ୍ରବେଶ ହୋଇ
ବନମାଳୀ ବନମାଳାଏ ନାଇ ଯେ
ବାଟ ଗୃହ୍ଣୁଁଛନ୍ତି ବସି ଯେ
ବିଧୁବଦନୀ କୁ ନିକଟେ ଦେଖିଣ
ମନ୍ଦ ମନ୍ଦ ହୋଇ ହସି ଯେ । ୧୩ ।

ଭେଟ ହୋଇଲେ ସେ ରାଧାମାଧବ
ଭଲ ବଢ଼ିଲା ଖେଦ ନଦଭାବ
ଭୋଗିଲା ଭୃଙ୍ଗ ଭେଟିଲା ମାଳତୀ
ଭେଟେ ଭେଳକୀ ଲାଗିଲା ଦୁହିଁଙ୍କି ଯେ ।
ଭେଟାଇ ଦୂତୀ ଅନ୍ତର ଯେ
ଭୋଗ ସଂଯୋଗେ ଭୋଗ ଅନୁସରଣି
ଉଢ଼ିଲେ ଚଗ୍ଗୁ ସୋଦର ଯେ । ୧୪ ।

ମାଧବ ଅଙ୍ଗ ମରକତ ଗିରି
ମୃଦୁଳ ହେମ- ଲତିକା ଈଶ୍ୱରୀ
ମତ୍ତ କି ଶିଖଣ୍ଡୀକୋଡ଼େ ହରିଣୀ
ମନ୍ତ୍ରେ ମତ୍ତଗଜ ବନନଳିନୀ ଯେ
ମହାବନ୍ଧ ଚଉଷଠୀ ଯେ

ମଦନ ସ୍ୱକାର                    ମଡ଼ା ନବ ଝୋପେ
ପଡ଼ି ନ ପାରନ୍ତି ଉଠି ଯେ । ୨୫ ।

ଯୁବତୀ ରତନ ଜାଣେ ହିତ୍ୱାଣୀ
ଜାଣେ ରତିରସ ନାନା ରଙ୍ଗେଣ
ଯନ୍ତ୍ରୁ ରସ ରସେ ସ୍ୱଧା ଅଧିକା
ଜାଣେ ବିପରୀତ ରତି ନାୟିକା ଯେ
ଜଗବନ୍ଧୁ ହୃଦ ପଦ୍ମେ ଯେ
ଯେଉଁ ରତିରସ                    ରସେ ରସବତୀ
ଖେଦଇ ଅତି ଉନ୍ମଦେ ଯେ । ୨୬ ।

ରଙ୍ଗା ଅଧରେ ଚୁମ୍ବନ୍ତି ଅଧର
ରସ ପୂରିତ ଉରଜ ଭଣ୍ଡାର
ରତ ଉଲ୍ଲକେ ଉଲ୍କେ ଭଡ଼ାଭଡ଼ି
ରସେ ଜଘନ ରେ ଜଘନ ଯୋଡ଼ି ଯେ,
ରସ ଅପ୍ରମିତା ହୋଇ ଯେ,
ରମଣୀ ବର                    ରସିକ ଶିରୋମଣି
ସାକ୍ଷୀ ସଖୀ ମତା ଦୁଇ ଯେ । ୨୭ ।

ଲକ୍ଷ୍ମୀ ଲକ୍ଷ୍ମୀଧର ଲଭଲେ ଭାବ
ଲାଜ ନ ପାଇଲେ ଦେବେ ଦୁର୍ଲଭ
ଲକ୍ଷ୍ମିଣ ତନୁ ନୋହୁ ଲାଗି ଭୁଲି
ଲସି କବରୀ ଉରଜରେ ଲୋଳି ଯେ
ଲମ୍ବେ ଶମ୍ଭୂଶିରେ ପାଣି ଯେ
ଲକ୍ଷ୍ମୀଧର ଲକ୍ଷ                    ଦେଖ ଲାଗି ତହିଁ
ଅର୍ଦ୍ଧ ଯୋଡ଼େ ଚିନ୍ତାମଣି ଯେ । ୨୮

ବନମାଳୀ ଦଧିବଦନ୍ତ ରସ
ବଣ୍ଡ୍ରାନିଲେ ଅଙ୍ଗେ ଚିହ୍ନିଲେ ବାସ
ବହୁତ ବନୋଇ କହଲ ବାମା
ବହୁତ ଅପ୍ରାଧ କର ମୋ କ୍ଷମା ଯେ
( ମୁଁ ) ବନ୍ଧୁ ବୁଝିପୁଣୀ ସିନା ଯେ
ବଡ଼ ମନ୍ଦ ମୋର    ଶାଶୂ ଯେ ନଣନ୍ଦ
ବାଦେ ଲଗିଥାନ୍ତି ଦିନା ଯେ । ୨୯ ।

ଶାପ ଥିର କର କହେ ସୁମୁଖୀ
ସ୍ନେହରେ କୋଳେ ଧର ପଦ୍ମଆକ୍ଷି
ଶ୍ୟାମ କରେ ଶ୍ୟାମ କବରୀ ସାଜ
ଶ୍ୟାମ କୁସୁମ ମାଳେ ଘନ ରାଜ ଯେ
ସୀମନ୍ତେ ମୁକୁତା ଜାଲ ଯେ
ସରୁ ଅଳକା    ଆନ କରି ଛନ୍ଦଣି
ଭାଲେ ମୃଗମଦ ସାଜି ଯେ । ୩୦ ।

ସୁରଙ୍ଗ କସ୍ତୁ ପତ୍ରାବଳୀ ମାନ
ସୁଗନ୍ଧ ଦେଶ କଲେକ ଲେଖନ
ସରୁ ଚୁମ୍ବନ ଦେଇ ଚିବୁକରେ
ଶ୍ୟାମ ସୁନ୍ଦର ଚାପିଲେ ହୃଦରେ ଯେ
ସୁରଙ୍ଗ ଅଧର କଲା ଯେ
ଶ୍ୟାମସୁନ୍ଦର    ଚିବୁକେ କର ଦେଇ
ଛଡ଼ାଇଲେ ନନ୍ଦବାଳା ଯେ । ୩୧ ।

ଶାଢୀରେ ଦଶେ ଲକ୍ଷ ଘଡ ଚଢ଼
ଶାମଳଲେ ଅଙ୍ଗେ ଶ୍ରୀଖଣ୍ଡ ଚନ୍ଦନ

ଶ୍ରବଣେ ଶୁଣିଲେ ତାଙ୍କ ବେନି
ଚିନ୍ତ୍ୟଫଳମାନ ହୃଦେ ମଣ୍ଡି ଯେ
ଜପରେ ତୁ ଅର୍ଦ୍ଧଅଙ୍ଗୀ ଗୋ
ସରସ ଲୋଚନୀ ଦଣ୍ଡେ ନ ଛାଡ଼ଇ
ଯୁଗେ ଯୁଗେ ପ୍ରାଣ ସଙ୍ଗୀ ଗୋ । ୩୨ ।

ହରିଣ ନୟନୀ ହରଷମନ
ହଂସ ଗମନୀ କହଇ ବଚନ
ହୋଇଥିବି ତୋ ଠାରେ ପରାଧିନୀ
ହୃଦେ ଜପୁଥିବି ତୋ ଗୁଣ ଗୁଣି ଯେ
( ତୁ ) ହୋଇଥିବୁ ମୋତେ ସାହା ଯେ
ହୋଇଥିବି ତୋର ଜନ୍ମେ ଜନ୍ମେ ଦାସୀ
ଅଙ୍ଗୀ ଦଅ ଚତୁବାହା ହେ । ୩୩ ।

କ୍ଷୀରୋଦଜା ବାଣୀ ଶୁଣି ଗୋପାଳ
ଛନ୍ଦେ ରାଧା କୃଷ୍ଣ ଛାଡ଼େ କୋଳ
କ୍ଷଣେ ନ ଛାଡ଼ଇ ତୁମ୍ଭ ପୀରତି
ଛାଇ ଯେସନେ ଥାଇ ବୃକ୍ଷର କତି ଯେ
କ୍ଷେମେ ଯାଅ ନିଜପୁର ଯେ
ଛାର ଦାମୋଦର ଅପରାଧ କ୍ଷମା
କର କରୁଣା ସାଗର ହେ । ୩୪ ।

---

# ସାନ କନଡ଼ା ଚଉତିଶା

ଚନାଇ ଦାସଙ୍କ ସାନ କନଡ଼ା ଚଉତିଶା ଓ ବଡ଼ କନଡ଼ା ଚଉତିଶାର ସ୍ଥାନ ଉତ୍କଳର ଅଧ୍ୟାତ୍ମ ଗୀତମାନଙ୍କ ମଧ୍ୟରେ ଅତି ଉଚ୍ଚ । ଏପରିକି ସର୍ବଜନ ପରିଚିତ ମନବୋଧ ଚଉତିଶା (କବି ଭକ୍ତଚରଣ)ର ଉପାଦାନ ମଧ୍ୟ ଏହି ଦୁଇ ଚଉତିଶାରୁ ସୃଷ୍ଟ । ଗୋପୀଭାଷାକାରଙ୍କ ପରିଚୟ ଅନାବଶ୍ୟକ । ଯେଉଁମାନେ ଗୋପୀଭାଷା ବର୍ଣ୍ଣିତ କୃଷ୍ଣଲୀଳାରେ ତଥା କଥିତ ଅଶ୍ଳୀଳତାର ଗନ୍ଧ ପାଇଁ ନାସାକୁଞ୍ଚନ କରୁଅଛନ୍ତି ଓ ପ୍ରାଚୀ ସମିତି ଗୋପୀଭାଷାର ପ୍ରକାଶକ ବୋଲି ପ୍ରାଚୀ ସମିତିର ଔଚିତ୍ୟଜ୍ଞାନ ବିଷୟରେ ଧୃଷ୍ଟ ମତ ପ୍ରକାଶ କରୁଅଛନ୍ତି ସେମାନେ ସାନ କନଡ଼ା ଓ ବଡ଼ କନଡ଼ା ଚଉତିଶା ପଢ଼ନ୍ତୁ ଓ ଛାତିରେ ହାତ ଦେଇ କହନ୍ତୁ ଗୋପୀଭାଷାକାର କେଉଁ ଶ୍ରେଣୀର ଲେଖକ ଓ ଚଉତିଶାରଚୟିତା ଜଣେ ଓ ସେମାନଙ୍କ ପ୍ରେରଣାଦାତା ଗୁରୁମାନେ କେଉଁ ଶ୍ରେଣୀର ଲେଖକ । କୃଷ୍ଣଲୀଳାରେ ଯାହାକୁ ଅଶ୍ଳୀଳତା କୁହାଯାଉଅଛି ତାହା ଯେ ଋଷିଜନ ଦୃଷ୍ଟିରେ, ଦେବଜନଦୃଷ୍ଟିରେ କାମ୍ୟବସ୍ତୁ ତାହା ତ ଯେ ସେ ବୁଝିପାରିବା କଥା ନୁହେଁ । ତାହା ଯଦି ହୋଇଥାନ୍ତା ତେବେ ବଙ୍ଗର କାହିଁକି ଗାଉଥାନ୍ତେ କୋଟି ଜନ୍ମରେ ଯା କାମନା ସଂସିଦ୍ଧି ଗୋବିନ୍ଦରସେ ସେ ରସର ।

କାହିଁକି ଜନମ ହୋଇଲି ଗୋସାଇଁ
କିଛିହିଁ କାର୍ଯ୍ୟ ତ ନୋହିଲା
କଷ୍ଟ ନରକରେ ଏକା ହୋଇଲା
କେତେଦିନ ଥିବି କୃଷ୍ଣ ନ ଭଜିଲି
କୁଟୁମ୍ବଜାଲ ତ ମୋହିଲା ।
ମନ ରେ ! । ୧ ।

ଖାଇବା ଖେଳିବା ହସିବା ଭୁଞ୍ଜିବା
ଏହି କଥାରେ ତ ରହିଲି
କ୍ଷଣେ ସାଧୁଗୋଷ୍ଠୀରେ ନ ବସିଲି
ଖୋଜିଥାଇ କେଣେ ଧନ ଅରଜିବି
କ୍ଷୁଦ୍ର ପାପରେ ନାଶ ଗଲି ।
ମନ ରେ ! । ୨ ।

ଗୂଢ ଅବୋଧ ଗହ୍ୱବରେ ରହିଛି
ଗ୍ରାହିଲ୍ଲନ କାଳ ଝକଟ
ଗଛ ରକ୍ଷା ଯିବାକୁ ନାହିଁ ବାଟ
ଗୋବିନ୍ଦ ନାମ ଗାୟନ ଦୂର କର
ଗଜ ମୂର୍ଖରୁ ହେଲ ଘାଟ ।
ମନ ରେ ! । ୩ ।

ଘୋଟିଛି ବିଷୟ— ବିଷ ନରକରେ
ଘାର ମୁଁ ହୋଇଲି ଅଚେତ
ଘାଏ ପଡି ହୋଇଲି ସ୍ତମ୍ଭୀଭୂତ
ଘଡିଏ ଗ୍ୟାନ ମୋ ଉଦୟେ ନୋହିଲା
ଘୋଷି ନ ପାରେ ମହାମନ୍ତ୍ର ।
ମନ ରେ ! । ୪ ।

ନ ଜାଣଇ ସୁଖ ନରକରେ ଦୁଃଖ
ନୟନ ଥାଉ ନ ଦିଶିଲା
ନଶି ତମିର ପ୍ରାୟେ ଅଛାଦିଲା
ନଥିଁ ଅଛି କଢ ନ ଜାଳଇ ଦୀପ
ନିଷ୍ପୟେ ବୁଦ୍ଧି ମୋ ନାଶିଲା,
ମନ ରେ ! । ୫ ।

ଚିନ୍ତୁଁ ଛି ଚକ୍ଷୁରେ ବାଟ ନ ଦିଶଇ
ଚରଣ କଣ୍ଟାରେ ପାଡିଲି
ଚଉପିଭୁଲି ପ୍ରାୟେକ ହୋଇଲି
ଚକ୍ରଧର ନାମ ଚିତ୍ତରେ ନ ଧରି

ଭୁଛା କଥାରେ ତ ଭୁଲିଲି ।
ମନ ରେ ! । ୬ ।

ଛଇଲ ବୁଦ୍ଧି ମୋ            କେବେହେଁ ନୋହିଲା
ଛୋଡ଼ ପାଇଣ ମରୁଥାଇ
ଛର କଥା ନିରନ୍ତରେ ଭଜଇ
ଛାର ଦେହ ମୋର            ବ୍ୟର୍ଥ ହୋଇଲା
ଛମାନାଥଙ୍କି ନ ଭଜଇ ।
ମନ ରେ ! । ୭ ।

ଜୀବ ବୋଲି ନାମ            ଅଗହ୍ନୁଁ ବହୁଛୁ
ଯିବା ତ ନିକଟ ହୋଇଲା
ଯୋଗେ ଏତେ ଦିନ ଯାଏ ରହିଲା
ଜାଣଇ ନାହିଁ            ଜାଣି ଜାଣି ଭ୍ରମୁଛୁ
ଯତନେ ମନ ନ ଦେଲି ।
ମନ ରେ ! । ୮ ।

ଝଗଡ଼େ ପଡ଼ି            ଝେଞ୍ଚିଲ ହୋଇ ଅଛୁ
ଝାଡ଼ି ଗହନେ ଅଛୁ ପଶି
ଝୁରୁଥାଇ ମୁଁ ସ୍ୱପ୍ନ ଦିବା ନିଶି
ଝଙ୍କାର ଖାଇବେ            ବୋଲି ସର୍ବ ଜନ୍ତୁ
ସନ୍ନିଧେ ମିଳିଛନ୍ତି ଆସି ।
ମନ ରେ ! । ୯ ।

ନିର୍ଦ୍ଦୟା ହୃଦୟେ            ନାହିଁ ମୋ ସଦୟେ
ନିରନ୍ତରେ ପାପ ଆଚର
ନଠ ଘଠ କଥାରେ ତତ୍ପର

ଞର୍ବି ଏଡ଼େ ନ ଭାବଲ ହରିଙ୍କି
ନିର୍ବାଣ ମୁକ୍ତି କଲ ଦୂର ।
ମନ ରେ ! । ୧୦ ।

ଟାଣ ପଣ ବୁଦ୍ଧି କେବେହେଁ ନୋହିଲା
ଟକାଏ ଭାବ ନ ଜାଣିଲ
ଟାହି ବଚନକୁ ଯୋଗ୍ୟ ହୋଇଲ
ଟକର ଥାଉ ଟୋପରେ ପଡ଼ିଅଛୁ
ଟେକି ତ କୃଷ୍ଣ ନ ବୋଇଲ ।
ମନରେ ! । ୧୧ ।

ଠାବ ଭଲ ପାଇ କୁସଙ୍ଗ ବଢିଲ
ଠାଠିଲ କଥା ନ ଜାଣିଲ
ଠଣ ଗଜ ଛଡ଼ି ଗଧ କିଣିଲ
ଠାକୁର କଥାକୁ ଅଣଶ୍ରଦ୍ଧା କଲ
ଠକ ଭଣ୍ଡେଣ ନାଶ ଗଲ ।
ମନ ରେ ! । ୧୨ ।

ଡରୁ ନାହିଁ ଡାଙ୍କ ପାତକ କଣ୍ଠୁ
ଡେଙ୍ଗି ଅଛୁ ସବା ଦାଣ୍ଡରେ
ଡେଇଁ ପଡ଼ୁଛୁ ଅଗାଧ ଗଣ୍ଡରେ
ଡଗର ହୋଇ ଖର ଡୋଟେ କହିବେ
ମରି ଯିବୁ ଯମଦଣ୍ଡରେ ।
ମନ ରେ ! । ୧୩ ।

ଢାଲେହେଁ ମନୁଷ ମାନଙ୍କ ଭିତରେ
ହୋଇଲ ଅସାରୁ ଅସାର
ଢାଲେ ଲେଖାରୁ ହୋଇଲ ବାହାର
ଢଗ ଢମାଳର କଥା ସରିଗଲା
ଢାଙ୍କିଲା ଅଜ୍ଞାନ ଅନ୍ଧାର
ମନ ରେ ! । ୧୪ ।

ଅଣହେଲା କଲ ଅମୃତରସକୁ
ଅଣି ଭକ୍ଷିଲୁ ବିଷଫଳ
ଅଣସ୍ୱସ୍ଥକୁ ଲାଗିଗଲା ବେଳ
ଅଣିମାଦ ଅଇ — ଧୈର୍ଯ୍ୟ ଦୂର କରି
ଅଣଗୋଷ୍ଠି ଲୋକ ସଙ୍ଗେ ମେଳ ।
ମନ ରେ ! । ୧୫ ।

ତାପ ତ ମନରୁ ଦଣ୍ଡେହେଁ ନ ଗଲା
ତୃପ୍ତି ତ ମନ ନୋହିଲା
ତଳ କୁସୁମ ପ୍ରାୟେକ ହୋଇଲା
ତର ତର ହେଣେ ଲୋଡ଼ା ପଡିବନି
ତୁଳ ହୋଇ ଏଣେ ରହିଲା ।
ମନ ରେ ! । ୧୬ ।

ଥିବ କେତେଦିନ ଥୟ ନ ପାଇଲୁ
ଥୋଇ ଲାଗି ଦୁଖ ପାଉଛୁ
ଥୋଇଲା ଧନ ଥିଲେ କରି ନ ପାରୁ
ଏବେ ହନ୍ତସନ୍ତ ହୋଉଛୁ
ମନ ରେ ! । ୧୭ ।

ଦୀନ ଦୁଖୀଜନ ଦୟାବନ୍ତ ହୀନ
ଦାରୁଣ ହୃଦୟ ମୋହର
ଦଣ୍ଡେ ନ ଭଜିଲି ମୁଁ ଦାମୋଦର
ଦେବତା ବ୍ରାହ୍ମଣେ ସେବା ତ ନ କଲି
ଦନା ଘରକୁ କାହିଁ ଗାର
ମନ ରେ ! । ୧୮ ।

ଧନ ସ୍ତ୍ରୀ ଲାଗି ଧଂହି ହୋଉଅଛୁ
ଧର୍ମ ଆଚରଣ ନ କଲି
ଧିକ ଜୀବନକୁ ଯୋଗ୍ୟ ନୋହିଲି
ଧରି ନ ପାରିଲି ମହାପ୍ରଭୁ ନାମ
ଜୀବନ ଥାଉ ଥାଉ ମଲି ।
ମନ ରେ ! । ୧୯ ।

ନଶି ହବସେ ତ ସଙ୍କଟ ଲାଗିଲା
ଅଗ୍ୟାନ ମତି ହେଲି ଭୋଳ
ନ ଦେଖିଲି ମୁ ଯେ ଦିବ୍ୟ ଚକ୍ଷୁଲ
ନିବୃଷ୍ଟ ଏତେ ନ ଭଜଇ ହରିଙ୍କି
ନାମ ଧରିବା କଷ୍ଟ ହେଲେ
ମନ ରେ ! । ୨୦ ।

ପତଙ୍ଗ ଯେହ୍ନେ ଅଗ୍ୟାନ ହୀନ ଜନ୍ତୁ
ପଡ଼ୁଛି ଜଳନ୍ତା ଅନଳେ
ପଡ଼ୁଅଛୁ ଡେଇଁ ଦେଖୁଛୁ ଡୋଳେ

ପିଅଇ ନାହିଁ                ପାଖେ ଅଛି ପୀୟୂଷ
ପଙ୍କ ପାଣିକି ମନ ବଳେ ।
ମନ ରେ ! । ୨୧ ।

ଫୁଟିଛି ଶିମୁଳୀ                ସୁରଙ୍ଗ ଦିଶୁଛି
ଯାଇ ଅପେକ୍ଷା ରହିଲି
ଫଳ ଖାଇବି ହୃଦରେ ଧରିଲି
ଫୁଟି ଉଡ଼ିଗଲେ                ସେ ଯେତେ ନିସ୍ତୁଳ
ସେହିମତ ପ୍ରାପ୍ତେ ହୋଇଲି ।
ମନ ରେ ! । ୨୨ ।

ବୁଦ୍ଧି ଥାଉ ଥାଉ                ନିର୍ବୁଦ୍ଧି ହୋଇଲି
ଭୁଞ୍ଜି ଅମୃତ କଲି ବିଷ
ବାଇପ୍ରାପ୍ତେ କଣଇ ଯିସ ଢସ
ବିକଳେ ବୋଲି ନ                ପାରିଲି ଗୋବିନ୍ଦ
ବୁଦ୍ଧି ବିବେକ ଗଲା ନାଶ
ମନରେ ! । ୨୩ ।

ଭାସିଯାଉଅଛି                ଅଗାଧ ଜଳରେ
•ଚିନ୍ତ ନ କର ମୁଁ ଶୋଚନା
ଭଜେ ନ ଭଜିଲି ପଦ୍ମଲୋଚନା
ଭଲ ଭଲ ଲୋକେ                ଭଲ ନ ବୋଇଲେ
ଭ୍ରାନ୍ତିରେ ପଡ଼ି ଚିନ୍ତା ଦନା
ମନ ରେ ! । ୨୪ ।

ମରଣ ବୋଲି ମୋ ମନେ ଗଣାନେ ନାହିଁ
ତୃଷ୍ଣା ନ ତୁଟିଲା ମଞ୍ଚାର
ମୁଁ ତ ଚିହ୍ନିଲି ମୋହ ଆଶ୍ରେ କର
ମହାପ୍ରଭୁ ନାମ ଅଣଶୁଣା କଲି
ମନ ଅଭାଗୀ ଦୁରାଗ୍ରହୀ
ମନରେ ! । ୨୫ ।

ଜଳନ୍ତା ଅଗ୍ନିରେ ଡେଇଁ ପଡ଼ୁ ଅଛୁ
ଜାଣିଛି ନାହିଁ ମୁଁ ମରିବ
ଯୋଗେ ଜୀଇଥିଲେ ଧରି କରିବ
ଜାଣିଲେ ଜଗନ୍ନାଥ ମୋତେ ଛାଡ଼ିଲେ
ଆଉ କାହିଁ ମୁଇଁ ତରିବ
ମନ ରେ ! । ୨୬ ।

ରାଜ ବିବସ୍ତରେ ରମଣୀତପରେ
ରହି ତ ବ୍ୟର୍ଥ ହୋଇଲି
ରାମ କୃଷ୍ଣ ନ ଭୁଲ୍ୱେ ନ ବୋଇଲି
ରାଜାପଣ ଛାଡ଼ି ଅଜା-ରଖୁଆଳି
ରଙ୍କପଣ ସୁଖ ମଣିଲି ।
ମନ ରେ ! ।୨୭ ।

ଲକ୍ଷ୍ମୀକେଳ ସରସତୀଆ ପକାଇ
ଲଥ ଖାଇବାରେ ରହିଲି
ଲଘୁ ସାଙ୍ଗେ ପଡ଼ି ସାଧୁ ଲେଛିଲି
ଲାବଣ୍ୟନଧି ଦୂର କରି ପକାଇ

ଜିହ୍ୱା କଣିମାରେ ପଶିଲା ।
ମନରେ ! । ୨୮ ।

ବାଲି ଚଷି ଚଷି     ଧାନ ବୁଣୁଅଛୁ
ବହୁତ କରୁଅଛୁ ଆଶ
ବାଡ଼ ବେଢ଼ାଇ ଅଛୁ ଚଉପାଶ
ବାଡ଼ୁଅ ଲୋକ     ସଙ୍ଗ ବଡ ପୀରତ
ବୁଦ୍ଧି ବିବେକ ଗଲା ନାଶ ।
ମନରେ ! । ୨୯ ।

ଶମ୍ଭୁ ଛାଡ଼ି ଶିଳ—     ପୂଜାକୁ ପଳୁଛୁ
ମିଛକୁ ମଣୁଅଛୁ ସତ
ସତ ଦିଶୁଅଛୁ ମିଛ ପ୍ରତ୍ୟକ୍ଷ
ସାଧୁ ସଙ୍ଗେ ସଙ୍ଗ     ହୋଇ ନ ପାରିଲୁ
ଅଦକ୍ଷ ଲୋକ ସଙ୍ଗେ ଦକ୍ଷ
ମନ ରେ ! । ୩୦ ।

ସର ପକାଇ ଘୋଳ     ଶାଗ ଖାଉଛୁ
ସୁଧା ଛେଡ଼ି ସୁରା ଅପ୍ୟାନ
ସାଧୁ ସଙ୍ଗେ ନ ରହିଲା ମୋ ମନ
ସୁବର୍ଣ୍ଣନିଧି ମୋ     ସନ୍ନିଧରେ ଅଛି
ଶାମୁକ ମଣେ ଦିବ୍ୟ ଧନ ।
ମନ ରେ ! । ୩୧ ।

ସପନ ନିଧି—     ସତ ପ୍ରାପ୍ତେ ମଣିଲି
ସିଦ୍ଧ ଛାଡ଼ି ଶାନ ପୋଷିଲି

ଶୁଷ୍କନଳ ପ୍ରାୟେ ବୋଲି ହୋଇଲୁ
ଷଣ୍ଠ ମୂର୍ଖଳ ପଦ୍ମକୁ ଦୂର କର
ଷାଣ୍ଢାଡା ଫୁଲକୁ ରସିଲୁ ।
ମନ ରେ ! । ୩୨ ।

ହୃଦୟ ଘଟରେ ଥୋଇଲା ଧନ ମୁଁ
ହଜାଇ ଦେଉଅଛୁ ବଣା
ଦେଖୁ ନ ପାଇ ଅଦକ୍ଷରେ ଗଣା
ହୋଇଲ ହନୁ ସନ୍ତୁକୁ ଯୋଗ୍ୟ ମୁହଁ
ହରି ଭକ୍ତିକ ଯନ୍ତ୍ରଁ ଭଣ୍ଡା ।
ମନରେ ! । ୩୩ ।

କ୍ଷଣଣ ଦ୍ୱିଗୁଣ ରକ୍ତ ବାଢ଼ି ଅଛୁ
ଛୁଟାଇଁ ନ କଲୁ ଉପାୟେ
ଷଣ୍ଢ ବାନ୍ଧିଲୁ ପାଦୁ ଶିର ଯାଏ
କ୍ଷର ଶ୍ୱାନ ଦନା ଲେଖାରୁ ବାହାର
ପାଦ ପଦ୍ମରେ ଥାଉ ଲୟେ ।
ମନ ରେ ! । ୩୪ ।



# କଳି ଗମନ ଚଉତିଶା

---

କଳି ଗମନ ଚଉତିଶାର ନାମକରଣରେ ମଧ୍ୟ ବୈଶିଷ୍ଟ୍ୟ । ବୋଧହୁଏ ଏହାର ଅନ୍ୟ କିଛି ନାମ ଥିଲା, କାଳକ୍ରମେ ମୂଳପଦ ହୁଅନ୍ତୁ ବାଦ ଏହା ପଦଟିର ହୋଇ ମୌଳିକ ନାମ ହରାଇଲା । ପ୍ରାଣବନ୍ତ ଓଡ଼ିଆ ପ୍ରେମ କବିତାରୁ ଏହା ଅନ୍ୟତମ ଓ ପ୍ରେମାବେଗର ସରସ ଅଭିବ୍ୟକ୍ତିରେ କବି ତାହାର ପାଣ୍ଡିତ୍ୟ ଦେଖାଇଛନ୍ତି । ଭଣିତା ଓ ଭଙ୍ଗୀମୂଳକ ପ୍ରମାଣରୁ ଜଣାଯାଏ ଚଉତିଶା ଏଟି ପୁରାତନ ।

ରାଗ—କାଳୀ

କଳିଗମନ ଯେ ଦିନ ପ୍ରିୟେ କହିଲ ତୋର ଆଗେ
କୁସୁମଧନୁ ଧରି ମଦନ ଥିଲେଟି ମୋର ଆଗେ
କି ଗୁଣେ ସଖି ହେଠ ବଦନ ଶୋଇଛୁ ଭୂମି ଲେଖି
କାମଦେବଙ୍କୁ ଛାଡ଼ି ମୋ ଉଦ୍ୟେ ତୋ କୁଚକୁମ୍ଭ ଦେଖି ।୧।

ଖେଦ ସମୁଦ୍ରେ ବୁଡ଼ିଲି ପ୍ରିୟେ ମୋ ସଦଜ୍ଞାନ ନାହିଁ
ଖର ନିଶ୍ୱାସ ଛାଡ଼େ ଛାଡ଼ିକି କପୋଳେ କର ଦେଇ ।
ଖସି ପଡ଼ୁଛି କାନ୍ଧୁ କବରୀ ଭୂଷଣ କେଶ ଶୋଭା
ଖାଇବ ବୋଲି ଯାଉଛି ରାହୁ ବଦନଇନ୍ଦୁ ଲୋଭା ।୨।

ଗଲାର ହାର କାଢ଼ି ଶା ପ୍ରିୟେ ନଥଉଅଛୁ ଭୁଇଁ
ଗନ୍ଧବ କଣ୍ଠ ପଣନ୍ତ ପାଇ କି ଗୁଣେ ଅଛୁ ଶୋଇ ।
ଗରବ କରିଥିଲି କାମକୁ ତୋତେ ଦେଖିବା ଯାଏ
ଗୋଡ଼ାଇ ଧନୁରେ ଗୁଣ ଦେଲା ତକେ ମଦନ ସ୍ୱପ୍ନେ ।୩।

ଘାଟ ହେଉଛି ଶରୀର ମୋର କି ଅଜ ଶରଘାତେ
ଘୋଡ଼ାଇ ମୁଖ ଶୋଇ ଯେ ଅଛୁ କଥା ନ କହୁ ମୋତେ ।

ଘାଉ ଦ୍ୱରଣୀ ପ୍ରୀତ୍ୟେକ ପ୍ରିୟେ ମନେ କରୁଛୁ ଚନ୍ଦ୍ରା
ଘଞ୍ଚ ଅଞ୍ଚଳେ ଦୁଇ ଯୁଗଳେ ଲଗାଇ ପ୍ରାଣ କାନ୍ତା । ୪ ।

ନବ ଯୁବତୀ ହୋଇଣ ପ୍ରିୟେ ଯେତେକ ଛନ୍ଦ ମୋର
ନ ରହେ ଚିତ୍ତ କାହାର ତହିଁ ମୁଖ ନ ଦେଖି ତୋର
ନ ଯିବ ଅଉବେଳେ କାହିଁକି ନୋହିବ ପରବାସୀ
ନୟନ ଟେକି ନ କହୁ କେବେ କାହାକୁ ଅଛୁ ରୁଷି । ୫ ।

ଚନ୍ଦ୍ର ଅଧିକ ବଦନ ତୋର ବୋଲୁ ଯେ ଥାଇ ମୁହିଁ ।
ଚନ୍ଦର କଥା ମନରେ ବ୍ୟଥା ରଜନୀ ଦୁଖଦେଇ
ଚନ୍ଦନ ପଙ୍କ ଲାଗନ୍ତେ ପ୍ରିୟେ ଚମ୍ପକ ଉଠେ ହୁଅ
ଚୁମ୍ବି ଚୁମ୍ବିଣ ଏତେ ନିର୍ଦ୍ଦୟା ହୋଇଲୁ ପ୍ରାଣପ୍ରିୟା । ୬ ।

ଛାଡିଣ ପ୍ରିୟେ ଯାଉଁ ଦିନୁ ତୋ କଲଇଁ ପରବାସ
ଛଳନେ ଦିନ ନେଉ ଯେ ଥାଇ ବଳାଇ ତୋତେ ଆଶ ।
ଛାଡ଼ି କରିବି ଏତେ ଯେତନ୍ଧ ଛାଡିବୁ ବୋଲି ଏତେ
ଛକିକେ କାମ ମୋତେ ମାରଇ ମାରଇ ନିକି ତୋତେ ।୭।

ଯେ ଦିନୁ ପ୍ରିୟେ ଉପେକ୍ଷି ତୋତେ ଗମନ କଲି ଏକା
ଯେଣେ ଚାହିଁଲେ ତେଣେ ମଦନ ଦିଅଇ ମୋତେ ଦେଖା
ଜଗଦଯାକ ଦଶନ୍ତ୍ର ମୋତେ ସବୁହେଁ ଯୁବାନାରୀ
ଜୀବନ କିପା ରହିଣ ଅଛି ତୋ ଗୁଣ ଅନୁସରି । ୮ ।

ଝୁରୁଛି କଣ୍ଠ ସ୍ମରୁଛି ମୋର ବିରହ ଜର ଯାଏ
ଝୁରୁଛି କଣ୍ଠ କପୋଳୁଁ ଝାଳ ନ ଦେଖି ସଖି ! ତୋଏ
ଝାଡ଼ି କଟାଣି ରଖ ଗୋ ପ୍ରିୟେ । ସୁରତ ଦାନ ଦେଇ
ଝିଟିକେ ଅଉ ଗଲେ ରେ ପ୍ରିୟେ ମୋତେ ପାଇବୁ କାହିଁ ।୯।

ଞାଦର୍ଘ୍ୟା କର କହୁଛନ୍ତି ପ୍ରିୟେ ଶୁଣ ତୁ ମୋର ବାଣୀ
ଞାସ୍ତ୍ୟ କର ରମଣୀ ଭୁଲେ ନାହିଁ ହ୍ଟ ହେଠ ପୁଣି
ଞାସ୍ତୁର ଚତ୍ର ଧରଣ ପ୍ରିୟେ ଶୋଇଛ ପିଟିଥାଇ
ଞାହିଁକି ଚତ୍ର ନ ରହେ କାହିଁ ତୋତେ ଦେଖିବା ପାଇଁ ॥

ଟେକଣ ମନ ଅଛଇ ମୁହିଁ ତୋତେ ଦେଖିବା ପାଇଁ
ଟାଣକ ପଣ କରନ୍ତୁ ପ୍ରିୟେ ଏଡ଼ନ୍ତୁ କପ ପାଇଁ
ଟଙ୍କାର କରଥିଲ୍ଲ କାମକୁ ତୋହର ମୁଖ ଦେଖି
ଟାଣେ ବାନ୍ଧୁଛ ମଦନ ରାୟେ ପାରୁ କ ବାରେ ରଖି । ୧୧ ।

ଠା ଠିକ କରି କହୁଛନ୍ତି ପ୍ରିୟେ ମନେ ନ ଧର ରୋଷ
ଠିକ ସ୍ୱରୂପ କହୁଛନ୍ତି ପ୍ରିୟେ ମନେ ନାହିଁ ମୋ ଦୋଷ
ଠାରି ଠରି ନୁହ ଗୋ ସଖି ସଖୀଙ୍କ ମୁଖ ଚାହିଁ
ଠିକ ସଳଖା ବୋଲିବେ ନିଜ ବକ୍ଷର ତେଜ ନାହିଁ । ୧୨ ।

ଡମ୍ବରୁ ମଣ୍ଡା ଧରଣ ପ୍ରିୟେ ହୋଇଲ ହର ପ୍ରାୟେ
ଡରେ ପଳାଇ କୁସୁମ ଧନୁ ଧରି ମଦନ ରାୟେ ।
ଡୋଲାର ପଙ୍କ ଲାଗୁ ଗୋ ପ୍ରିୟେ କହ ମୋ ମୁଖ ଚାହିଁ
ଡାଳିମ୍ବ ମଞ୍ଜି ଦଶନ ଯେନ ହୃଦୟ କାଠ ସହି । ୧୩ ।

ଢକା ବଜାଇ କହୁଛନ୍ତି ପ୍ରିୟେ ତୁ ବଡ଼ ଅନୁରାଗୀ
ଢୋଲ ଝମକ ଦଅଇ କାମ ତୁ ବଡ଼ ଅନୁରାଗୀ ।
ଢଳ ଢଳ ନୟନୁ ଖର ଅରୁଣ ଚକ୍ଷୁ ଡୋଳା
ଢାଳେଦେଇଁ ସଖି ! ମରିବି ଆଜ ନ କର ଅଣଦେଲା ।୧୪।

ଅଣଖ ଅଡ଼େ ହୋଇଣ ପ୍ରିୟେ ଏବେ କହୁଛ ଯୋଡ଼ି
ଅଣି ଅପ୍ରାୟେ ବାନ୍ଧୁଛ କାମ ଧନୁରେ ଶର ଯୋଡ଼ି

ଅଣଅପ୍ରାଧୀ ଅଟଇ ପ୍ରିୟେ ଦୋଷ ମୋ କର ଷମା
ଅଣ ଉତ୍ତର ବଚନେ ନ ଦେଉ ତରୁଣୀ ରାଜଯେମା ।୧୫।

ତରୁଣୀ କୁଳ ରତନ ପ୍ରିୟେ ଅଟୁ ତୁ ଗୁଣନିଧି
ତରବ ବୋଲି କାମ ସାଗରୁ ତରୁଣ ତୋର ବୁଦ୍ଧି ।
ତୋହର ଭୂଜ ହୋଇବା ଦେଖି ମୁଚୁଛି ମୋର ହିଆ
ସ୍ୱାସ ଧଟଇ ମଦନ ରୂପେ ହୋଇଛି ଦ୍ୱାରେ ଠିଆ । ୧୬ ।

ଥଳ ନ ପାଇ ମଦନ ଜଳେ ଯାଉଛି ମୂହିଁ ଭାସି,
ଥିବର ପଣ କର ଗୋ ସଖି ଭୁଜ ମୋ ଧର ଆସି
ଥିର ଗରବ ତୋ ରୂଚ ହେଲା କରଣ କର ପାର
ଥିବ ଯାବତ ଶରୀରେ ଜୀବ ଖଟଣ ଥିବ ତୋର । ୧୭ ।

ଦରିଦ୍ରନିଧି ପାଇବା ପ୍ରାୟେ ହୋଇଛି ମନ ମୋର
ଦେଖିଲି ଯେତେବେଳେ ଗୋ ସଖି ! ଚନ୍ଦ୍ରବଦନ ତୋର ।
ଦର୍ଶନ କଲି ବେଳେ ଗୋ ସଖି ମନ ମୋ କାହିଁ ଭ୍ରାନ୍ତ
ଦୁଖ ପାଇଲି ଚାତକ ପକ୍ଷୀ ମନେ ନୋହିଲି ଶାନ୍ତ

ଧୂଳି ଧୂସର ହୋଇଣ ପ୍ରିୟେ ଅବନୀ ଅଛୁ ଶୋଇ
ଧୀରମଣି ରେ ! ଫାଟଇ ହିଆ ତୋ ନାରଖାର ମୁହିଁ
ଧରଣୀ ଭିତ୍ତି ତରୁଣୀ ଯେତେ ନୋହନ୍ତି ତୋତେ ସର
ଧରଣ ହାତେ ଭରଣ ପ୍ରାୟେ ବିନତି ଯେନ ମୋର ।୧୯।

ନୂଆ ବୟସି ! କୁଟିଲ କେଶି ! ପଞ୍ଚ ପ୍ରାଣ ତୁ ମୋର
ନଚିଁ ଭର୍ମାଙ୍ଗି ! ନୋହିଲେ ସାହା ଯିବ ଗରବ ସର
ନଡନ୍ତ ହାଥେ ମରବ ଧନ ଦେଖି ମରଣ ମୋର
ନବନିତାଙ୍ଗି ! ଜୀଇବୁ ଯେବେ ହୃଦ ପଥର କର ।

ପୁଚ୍ଛ ତୁ ସଖି ! ଫସାରେ ଯେତେ ତରୁଣୀ ଛନ୍ତି ରହି
ପ୍ରାଣବଲ୍ଲଭ ଉପରେ ଏତେ ନ ଥାନ୍ତି ସ୍ନେହ ବହି
ପ୍ରତିଜ୍ଞା କରିଥିଲି କାମକୁ ତୋହର ମୁଖ ଦେଖି
ପାଇବି ବାରେ ଚନ୍ଦ୍ରମା ମୁଖ ଜୀବନ ହୋଇ ସୁଖୀ ।୨୧।

ଫେଡ଼ଣ କଥା ନ କହୁ ତୁ କେ ମନେ କରୁଛୁ ଆଣି
ଫେଡ଼ଣ ହୃଦ ଉଦରେ କାମ ପ୍ରାଣ ନେଉଛି ହାଣି
ଫୁରୁଣା ଥିଲା ସବୁ ସରିଲା ତୋହର ମାନ ହେତୁ
ଫାନ୍ଦେ ପକାଇ ଅବସ୍ଥା ମୋରେ ଦିଅଇ ମୀନକେତୁ । ୨୨ ।

ବରଷା ଋତୁ ଅସନ୍ତେ ସଖି ! ପରବାସରୁ ଆସି
ବଲ୍ଲଭ ଅସି ଗୃହେ କହନ୍ତେ ନ ଥାନ୍ତି ଏତେ ରୁଷି
ବୋଲୁ ଯେ ଥାଉ ମୋ ମୁଖ ଗୃହେଁ ତୋ ତନ୍ଦୁ ଆନ ନାହିଁ
ବୁଝିଲି ଏବେ ଯେତକ ପ୍ରୀତି ସ୍ନେହ କାହାର ନୋହେ କେହି ॥

ଉତ୍ୟର ଉତ୍ୟ କରଣ ପ୍ରିୟେ ଦେଖିଣ ଥାଉ ତୁହି
ଭରସା କରିଥିଲି କାମକୁ ଡରିବି ଆଉ ନାହିଁ
ଭରମଅଙ୍ଗି ! ଅବଳୀଶୋଭି ଭାଙ୍ଗିଲୁ ଉତ୍ୟ ଅଙ୍ଗ
ଭରସା ଗଲା ମୀନକେତନ ଦେଲା ରେ କେଡ଼େ ତ୍ରାସ ।

ମଦନ ଦେବ ଶରରେ ଧନ ମନ ମନ୍ଥଇ ମୋର
ମାଇଲେ 'ମୋତେ ମାନନୀଇଶ ! ତୁ ପଞ୍ଚେ ସ୍ନେହ ତୋର
ମନୋଜ ଗୁଣ ତୁ ଅଚମ୍ଭିତ ଦେଖିଲି ଏବେ ମୁହିଁ
ମୋହର ମନ୍ କାଢ ହୋଇଛି ମୋତେ ମାରିବା ପାଇଁ ॥

ଯୁବାବୟସ ତାଙ୍କୁ ଗୋ ପ୍ରିୟେ ! ଦାସ କରିଛି ତୋର
ଜମ୍ବୁନଦକୁଙ୍କୁମ ବରଣୀ ପଙ୍କଜକେଶୀ ଗୋଉ !

ଜାଣି ନ ଜାଣି ବିଦେଶେ ସଖି ! ରହିଲି ଦିନାକେତେ
ଜୀବ ଯାବତ ଶରୀରେ ଥିବ ଛାଡ଼ିବ ନାହିଁ ତୋତେ ।୨୬।

ରମଣୀକୁଳ ରତନ ପ୍ରିୟେ ! ଝଟ୍ଟି ତୁ ଗୁଣଗ୍ରାହୀ
ରାତି ଦିବସ ଗୁଣି ଅଛିଲି ତୋତେ ଦେଖିବା ପାଇଁ
ରୋଷ କରଣ କିମନ ଏତେ ଦେଉଛୁ କାହିଁପାଇଁ
ରହିଣ କଁପା ଶରୀର ଅଛୁ ବଜ୍ର ଆକାର ହୋଇ । ୨୭ ।

ଲୁଚାଇ ମୁଖ ଶୋଇଣ ଅଛୁ କଥା ନ କହୁ ମୋତେ
ଲୋଡ଼ି ଯେ ଥାଉ ନ ଥିଲା ବେଳେ ମିଛକୁ ମିଛ ଯେତେ
ଲକ୍ଷ କରି ତା ବିନ୍ଧୁଛି କାମ ଆକୁଳ ହୋଇ ଦେହି
ଲାବଣ୍ୟମୁଖୀ ରଖ ରେ ସଖି ! ଅମୃତ ରସ ଦେଇ । ୨୮ ।

ବୟସ ନାରୀ ଏଡ଼େ ତରୁଣୀ ବୁଝିଲି ନାହିଁ ମୋର
ବଞ୍ଚିତ ଅପି ଗୃହ୍ଣ କନ୍ଦର୍ପେ ବହୁତ ରୋଷ କରି
ବୁଡ଼ିଲି ଆଜ କାମସାଗରେ ଉବର ଧରି ସହି !
ବଡ଼ ନିଷ୍ଠୁର ହୋଇଣ କାମ ଧନୁରେ ଗୁଣ ଦେଇ

ଶିରୀଷ ଫୁଲ ଶରୀର ତୋର ଅଟୁ ତୁ ସୁକୁମାରୀ
ଶରୀର ଏଡ଼େ ନିଷ୍ଠୁର କରୁ ଧରିବ ନାହିଁ ନାରୀ
ଶିରେ କୁସୁମ ଖୋଷିଣ ପ୍ରିୟେ ବୋଲୁ ଯେ ଥାଉ ମୋତେ
ଶିବ ପାଷାଣୁ ଅଧିକ କରି ଧଇଲୁ ଆଜି ତୋଁତେ । ୩୦ ।

ଶୋଇଲାଠାରୁ ଉଠି ଗୋ ପ୍ରିୟେ ଦିଅ ତୁ ମୋତେ ଗାଳି
ଶିରରେ ଦେଇ ଯାଅ ଗୋ ପ୍ରିୟେ ଅମୃତ ରସ ଢାଳି ।
ସବୁ ତରୁଣୀ ମିଳିଣ ପଛେ କରନ୍ତୁ ଉପହାସ
ସତେହେଁ ଲଜ୍ୟ ଜନଙ୍କୁ ପ୍ରିୟେ ଲାଗୁ ସକଳ ଦୋଷ ॥

ଷଡ଼ଙ୍ଗେ ଶାନ୍ତି ଧରଣ ନୃପ ମସ୍ତାଣ ଅଛୁ ବେଢ଼ି
ଷଣ୍ଢ-ଦେହେଭଙ୍ଗୀ-ଚୋର ! ମୁଁ ଅଜ୍ଞା କାହିଁ ନ ପାଏ ଲୋଡ଼ି
ସାହସ କରି ରହିଛୁ କେତେ ମନରେ ନୈରାଶ ବହି
ବିନ୍ଧୁଛି ବାଣ ମଦନସ୍ୱପ୍ନେ ବାରେ ଭୁ କର ଶାହି । ୩୨ ।
ହୃଦୟେ ଧାରି କରିଣ ପ୍ରିୟେ ଢୋଳଣ ଭୂଜେ ଭଡ଼ି
ହରିବଲ୍ଲଭ ସନ୍ତାପ କଲ୍ପ ହେଲେହେଁ କର ପାରି ।
ହୋଇଲେ ତୋର ସୁଧ୍ୟର ସୁଧ୍ୟ ଦୋଷ ମୋ କର କ୍ଷେମା
ହେଲେ ଉତ୍ତର କି କେତେ ଦେଉ ତରୁଣୀ ରାଜନେମା । ୩୩ ।
କ୍ଷିତିନୃପତି ହୋଇ ତୋ ଦାସ ଅଟଇ ପ୍ରିୟେ ମୁହିଁ
କ୍ଷଣକେ ସୁଖ ଦେବା କଷ୍ଟତ ଉଚ୍ଚୁର କସ ପାଇଁ ।
କ୍ଷିତ-ମୋହନ ! ପାଷାଣେ ଗଢ଼ ବାନ୍ଧ ଶିଖିଲୁ କାହୁଁ
କ୍ଷଣକେ କହେ ନୃସିଂହ ସ୍ୱପ୍ନେ ବାଉନ ଜୀବ ଯାଉ । ୩୪ ।

---

କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀ ବହ୍ନିଦଚରଣ ପଟ୍ଟନାୟକ ବି. ଏ.ଙ୍କ ଦ୍ୱାରା ମୁଦ୍ରିତ

# ଶୁଦ୍ଧିପତ୍ର

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ପଂକ୍ତି |
| --- | --- | --- | --- |
| ବଚରନା | ବିଚରନା | ୯ | ୨୦ |
| କସୁମ | କୁସୁମ | ୧୩ | ୨ |
| ଝୁଂସକ | ଝୁଂଠକ | ୨୦ | ୯ |
| ଅସି | ଆସି | ୨୭ | ୫ |
| ମୋଦୋ | ମୋଦୋ | ୨୭ | ୮ |
| ଖଟ୍ଟାଙ୍ଗ | ଖଟ୍ଟାଙ୍ଗ | ୩୦ | ୭ |
| ବୃଜଲାଭ ( ? ) | ବୃଜଲ୍ଲ କଣ୍ଠରେ | ୪୪ | ୯ |
| ସଙ୍ଗୀତ ପଠନ | ସଙ୍ଗୀତ ପଠନୀ | ୬୦ | ୨୧ |
| ଭ୍ରୁଥା | ଭୃଥା | ୬୬ | ୫ |
| ହେମ ସେତବନ୍ଧ | ହେମ ସେତୁବନ୍ଧ | ୭୧ | ୬ |
| ରୋଗେଲଗାଇଲକେଳ | ରଗେ ଲଗାଇଲ କଲ | ୭ [illegible] | ୫ |
| ଭଜ | ଉଜ | ୭୬ | ୧୧ |
| ସନ୍ଦେଶ | ସନ୍ଦେଶ | ୭୭ | ୧୩ |
| ଅଘ | ଧଘ | ୮୦ | ୨୨ |
| ନକର | ନ କର | ୮୧ | ୧୯ |
| କପଳେ | କପାଳେ | ୮୬ | ୪ |
| ଯାନ୍ | ଜାନ୍ | ୮୭ | ୬ |
| ମୁଖ | ସୁଖ | ୮୬ | ୧୭ |
| ଚନ୍ଦ୍ର | ଚନ୍ଦ୍ର | ୧୦୮ | ୭ |
| ଫୋଡ଼ | ଫେଡ଼ | ୧୦୯ | ୨୧ |

# ଚଉତିଶା ଚନ୍ଦ୍ରିକା

## ମନ୍ଦାକିନୀ ଚଉତିଶା

୧ । କୃପାଲୋଲଲୋଚନା—ଦୟାରେ ଚଞ୍ଚଳ ବା ସନ୍ତୁଷ୍ଟ ଚକ୍ଷୁ ଯାହାର । କଳକଣ୍ଠ—ପିକ । କନକପ୍ରଭମ ବରନା—ସୁନା-ଗୋରୀ । କନକକମଳ—ସୁନାପଦ୍ମ । କରୀକ୍ରୀଡ଼ାଗମନୀ—ଗଜଲୀଳାଗମନୀ । ୨ । ଉପଗତ—ଦଶା ବା ଭାବ । ଖଣ୍ଡେନ୍ଦୁଶେଖର—ମହାଦେବ । ଜୀବିତ—ପ୍ରାଣ । ଝର—ଚଞ୍ଚଳ । ଅପାଙ୍ଗ—ଆଖିର କୋଣ । ୩ । ଗାଢ଼—ଗମ୍ଭୀର । ଗୂଢ଼—ଯାହା ସହଜେ ଜଣା ହୁଏ ନାହିଁ, ପ୍ରଚ୍ଛନ୍ନ,—ବାହାରେ କଠିନ ଭିତରେ ସରସ । କୁମୁଦନାଳକା—କଇଁନାଡ଼ । ଗନ୍ଧର୍ବସତ୍ତ୍ୱା—ଗାନକୁଶଳା. ଅତଏବ କଳାବତୀ । ୪ । ଘଟ୍ଟଣ—ସୁନ୍ଦର । କୃତାନ୍ତ—ଯମ । ପ୍ରତୀକାର—ମହୌଷଧ । ଶ୍ରବଣପଥେ—କାନରେ । ୫ । ନଳିନ—ପଦ୍ମ । ଇନ୍ଦୀବର—ନୀଳକଇଁ । ନୀଳକଣ୍ଠ—ମୟୂର । ମଦଗ—ମତ୍ତଖଞ୍ଜନ ପକ୍ଷୀ । ଚଞ୍ଚଳାଯୁତ—ଚଞ୍ଚଳ ପାର୍ଶ୍ୱ । ମନ୍ଥରେ—ଅଳସରେ, ଧୀରେ । ୬ । ଅନିଳ—ପବନ; ବ୍ୟଜନ—ପଙ୍ଖା, ଅନାୟାସରେ—ସହଜରେ । ୭ । ନିହାଣୀ—ଚଭୁଷି; ଶ୍ଳେଷ—ଦୁଇ ବା ବେଶି ଅର୍ଥଥିବା ଉକ୍ତି । ବିଳାସ—ଲୀଳା । ଛୀନୋଦରୀ—ଷୀଣୋଦରୀ—କୃଶୋଦରୀ । ଛଡ଼...ନାହିଁ—ହଡୋଷ୍ଟ'ହ ହେବନାହିଁ । ୮ । ରଜ—ଧୂଳି । ସ୍ନେହକଳାପ—ସ୍ନେହସବୁ । ୯ । ଝଳିଦଶନୀ—ସୁନ୍ଦର ଦନ୍ତୀ । ଅନକ୍ଷରେ—ଅବ୍ୟକ୍ତ ବା ଅସ୍ପଷ୍ଟ କଥାରେ । ଝଳ—

ବଚନରେ—ଲକ୍ଷିତ ତେଜରଭାବ, ଅଳକରେ ଅନ୍ଧକାର ଓ ବଳ ବା ଛାଣ ସେ କଥାରେ ଥିବ । ୯ । ଛେକହାସୀ—ଚତୁରହାସୀ । ୯ । ସ—ମାଛ । ୧୦ । ନୃପବଲ୍ଲଭା—ରଜାଘର ସ୍ତ୍ରୀ । ନଳିନ ନାଳୀ—ପଦ୍ମନାଡ଼ । ନିସର୍ଗ—ସ୍ୱଭାବତଃ । ସୁରତ-ପ୍ରଶ୍ନର-ପାଖାକୁ—ଯାହାଠାରେ ରତିରସ ସମ୍ଭବ । ୧୧ । ଛକ୍କଧର—ଶିବ, ତାଙ୍କ ବଇର ଶତ୍ରୁ କାମଦେବ । ୧୬ । ଅଜିର—ଅଗଣା; ଠିକ—ସୁନ୍ଦର ଓ ଭଲ । ଠଣ—ସୁନ୍ଦର । ଠାଠିକ କରି—ଉପଯୁକ୍ତ ଭାବରେ ବା ସୁନ୍ଦର ଭାବରେ । ୧୪ । ସୁଠାମା—ସୁଗଠନା, ସୁନ୍ଦରୀ । ପ୍ରେମକଳା—ପ୍ରୀତିବତୀ । ପ୍ରଣୟୀଅରହ୍ରା—ପ୍ରୀତିପୂର୍ଣ୍ଣହୃଦୟା । ୧୫ । ଅଣୁମଧ୍ୟମା—କ୍ଷୀଣକଟି । ଅଣି—ଟେକ । ଅଣିପାରିବାକୁତ—ସମକକ୍ଷ ହେବାକୁ । ଅନଙ୍ଗ···ବଢ଼ାଇରେ—ମଦନ ସମୁଦ୍ରରେ ଜୁଆର ଭଟ୍ଟା ପକାଇ ଦେଇପାରେ; କାମଭାବକୁ ବଢ଼ାଇପାରେ ଓ ଭୁଟାଇଦେଇ ପାରେ । ଅମ୍ବୁଜ—ପଦ୍ମ । ୧୬ । ତନୁ—ଅଳ୍ପ ଓ ଦେହ । ମଜ୍ଜନ କରିବ—ମଜିବ । ତନୁଦାନେ—ଅଳ୍ପ ଦାନରେ । ହେମଗିରି ଦାନେ—ସୁନାର ପର୍ବତ । ତୁଙ୍ଗସ୍ତନ କନକ ଗିରି—ତୋର ଉଚ୍ଚସ୍ତନ ହେଲା ସୁନାର ପର୍ବତ । ତନୁଦାନ—ଅଳ୍ପଦାନ ( ଶ୍ଳେଷାର୍ଥରେ ଶରୀର ଦାନ ) ତ ପ୍ରଭୃତି ପୁନର୍ବାର ସ୍ତନରୂପ ସୁନାଗିରି ଦାନକୁ କିଏ ନାହିଁ କରିବ, ସେତ ଭାଗ୍ୟର କଥା । ୧୭ । ଶୃଙ୍ଗାର ଶାଣରେ—କାମ ଚେସର ଶାଣରେ । କାମ ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ ଆଲିଙ୍ଗନ, ଚୁମ୍ବନ, ଅଧରପାନ, ନଖକ୍ଷତ, ଦଶନକ୍ଷତ ପ୍ରଭୃତି କାମର ଉଦ୍ଦୀପକ । ତତ୍ପରେ ସୁରତ ବନ୍ଧାଦ, ରତିରହସ୍ୟ ବା ବାତ୍ସାୟନ ଦ୍ରଷ୍ଟବ୍ୟ । ନଖଦଶନ ପଦ—ନଖ ଓ ଦନ୍ତର କ୍ଷତ । ୧୮ । ଅଧିକ୍ଷେପ—ପ୍ରେରଣ । ୧୯ । ସାରଙ୍ଗ ପତାକା—ମଦନ ପତାକା । ଏଗଡ଼ପଡ଼—ଶ୍ରମକର । ଗୂଢ଼ ବଚନା—ଯାହାର କାର୍ଯ୍ୟର ଗତି ଜଣାଯାଏ ନାହିଁ ।

୨୦ । ନେତ୍ର ପ୍ରସ୍ତର—ଚନ୍ଦ୍ରକାନ୍ତମଣି । ୨୧ । ପ୍ରଣତ—ବିନୀତ । ୨୨ । କୋରକ—କଢ଼ି । ପକ୍ଷ୍ମଳ—ଅକ୍ଷିପତା । ୫୬—ପଦ୍ମଷାବ । ଘୂର୍ଣ୍ଣା—ଆନନ୍ଦ । ଯାଇ—ଉନ୍ନତ, ଦୁଃଖ । ୨୩ । ବନରୁହ—ପଦ୍ମ ( ବନ—ଜଳ ) । ବର୍ଗେ—ମୁଣ୍ଡରେ । ବଳନ—ସୁଗଠଣ, ଉଲ୍ଲ । ୨୪ । ପାଟୀର ଦ୍ରବ—ଚନ୍ଦନ ଜଳ । ଆଶ୍ଳେଷ—ଆଲିଙ୍ଗନ । ଭୂରିତଲ—ବିପୁଳ । ୨୫ । କନ୍ଦର୍ପଶରେକ୍ଷଣା—ଯାହାର ଚକ୍ଷୁ ଦେଉଛି କାମର ଶର । ୨୬ । ପଦପାଟୀଧାରି—ସୁନ୍ଦର କଥାର କ୍ରମ । କୁସୁମ ମଣ୍ଡନ ଶିରର—ଏ ସବୁ ମୁଣ୍ଡରେ ଫୁଲ ଦେଇଛନ୍ତି ପର । ୨୮ । ଶ୍ରୋଣି—ପିଣ୍ଡ । ଉଜ୍ଜଳ—ପ୍ରକାଶ । ୨୯ । ଦେବପଥସଂଗ୍ରର—ଆକାଶଗୃହୀ । ଶ୍ଳେଷ—ଦ୍ୱି ଅର୍ଥଥିବା କଥା । ବିଷବଳିତ···ବିରଚନା ( ବିଷବଳିତ—ବିଷଯୁକ୍ତ ) ମଳୟ ପର୍ବତରୁ ଅର୍ଥାତ୍ ଚନ୍ଦନବନରୁ ସାପଙ୍କ ନିଶ୍ୱାସରେ ବିଷଯୁକ୍ତ ଦକ୍ଷିଣାପବନ ତ ପୁଣି ବସନ୍ତରେ କୋଇଲିର କୁହୁକୁହୁ ସ୍ୱରର କାରଣ ହୁଏ । (ଗୀତଗୋବିନ୍ଦ ଦେଖ) ୩୦ । ସୁଷମା—ସୁନ୍ଦରୀ । ଅମୃତ ଓ ବିଷ ଏ ଦୁହେଁ ରମଣୀ ନେତ୍ରରେ ଥାଆନ୍ତି । ୩୧ । ଶ୍ୟାମା—ଯୌବନମଧ୍ୟସ୍ଥା (ଶ୍ୟାମା ଯୌବନ ମଧ୍ୟସ୍ଥା) । ଯେ ଯୁବତୀ ପୁତ୍ର ଜାତ କରିନାହିଁ ବା "ଶୀତେ ସୁଖୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଯା ସୁଖଶୀତଳା । ତପ୍ତକାଞ୍ଚନବର୍ଣ୍ଣାଭା ସା ସ୍ତ୍ରୀ ଶ୍ୟାମେତି କଥ୍ୟତେ ।" ୩୨ । ସରସିଜମୁଖୀ—ପଦ୍ମମୁଖୀ । ୩୩ । ବଇରାଗ—ବିରକ୍ତି । ଉଚକ-ସ୍ତନ । ହୃଣ୍ଡୀର—ସମୁଦ୍ରଫେଣ । ୩୪ । ରାଗ ଜଳଧିରେ—କାମ ସମୁଦ୍ରରେ । କ୍ଷପାକର—ଚନ୍ଦ୍ର । କ୍ଷୀରସିନ୍ଧୁଜାପତି—ଲକ୍ଷ୍ମୀପତି, ଜଗନ୍ନାଥ ।

---

# ବର୍ଷାଭାବନା ଚଉତିଶା

୧ । କାଳିକା—ମେଘ । କୁଶଳ—ଅଧିକ । ୨ । ଖମଣ୍ଡଳ—ଆକାଶସ୍ଥଳ । ଶିଖଣ୍ଡ—ଶିଖର । ଖଣକାନ୍ତ—ବିଜୁଳି । ୩ । ଗନ୍ଧର୍ବ-ସତ୍ତ୍ୱା — ନୃତ୍ୟବିଦ୍ୟାକୁଶଳା, କଳାବତୀ । ଗଇରିକଗୋଷ୍ଠୀ — ଗେରୁର ରଙ୍ଗପରି ବର୍ଣ୍ଣ ଯାହାର । ଗଙ୍ଗାଧରରିପୁ—କାମଦେବ । ୪ । ଘନଘଟା —ମେଘସମୂହ । ସୁଧାଂଶୁମୁଖୀ—ଚନ୍ଦ୍ରମୁଖୀ । ୫ । ନୀଳକଣ୍ଠ—ମହାଦେବ । ନୀଳେନ୍ଦୀବର—ନୀଳକଇଁ । କୁଳପାଳିକା—କୁଳସ୍ତ୍ରୀ; "କୁଳସ୍ତ୍ରୀ କୁଳପାଳିକା"—ଅମର । ୮ । ଜାଣୁମଣି—ଜ୍ଞାନମନ୍ତ୍ରୀ । ଜଳଜାକ୍ଷୀ—ପଦ୍ମନୟନା । ଚଭୁଅଣ—ଉପରକୁ ତୋଳି ବା ଟେକି ହୋଇଥିବା । ୯ । ମହାଘନ—ଅତିସ୍ଥୂଳ । ଝଟକହାସୀ—ଚହଟହାସୀ । ଝଷକେତନ—( ଝଷ — ମତ୍ସ୍ୟ ) ମଦନ ।• ସୁଶ୍ରୋଣି—ସୁନିତମ୍ବା । ୧୦ ନୀପ — କଦମ୍ବ । ୧୧ । ଟଳବାଲୁ—ଗଡ଼ବାଲୁ । ୧୨ । ଠଠଣା—ଠିକ କରି । ଠାଣିଜଘନୀ—ସୁନ୍ଦର ଜଘନା । ୧୩ । ବରବୋହା — ପରମସୁନ୍ଦରୀ ସ୍ତ୍ରୀ । ଡମ୍ବରୁକର—ମହାଦେବ । ମନୋଜତାପ—କାମଅଗ୍ନି । ୧୪ । ଅନଙ୍ଗ-ଅହିବିଷହର — କାମରୂପ ସାପର ବିଷକୁ ହରଣ କରେ ଯେ । ୧୫ । ଅଣୁମଧ୍ୟା—କୃଶୋଦରୀ । ରୁହାଅ—ରଖାଅ । ୧୬ । ତାରତରଙ୍ଗ ତୋୟଜ—ଅତିଉଜ୍ଜ୍ୱଳ ନୀଳ ପଦ୍ମ । ୧୮ । ଜାତି କଳି ନଖେ — ଜାଇଫୁଲର କଢ଼ିପରି ନଖରେ । ୧୯ । ଧବଳକିରଣ ବଦନେ—ଚନ୍ଦ୍ରବଦନରେ । ୨୦ । ହେମଗଉରୀ-ସୁନାଗୋରୀ । ୨୧ । ପୁଣ୍ଡରୀକପତ୍ରାୟତ ଲୋଚନା — ପଦ୍ମପତ୍ରପରି ବିଶାଳ ଆଖି ଯାହାର । ୨୨ । ଫୁଲ୍ଲାରବିନ୍ଦ— ଫୁଟିଲାପଦ୍ମ । ୨୫ । ମହର-ନେତ୍ରୀକି—ଖଞ୍ଜନନୟନାକୁ । ୨୭ । ଜଳଜାକ୍ଷୀ—ପଦ୍ମନୟନା । ୨୮ ।

ଲାବଣ୍ୟଲପନା—ସୁନ୍ଦରମୁଖୀ । ୨୯ । ଲୋମ୍ବୁଏ—ଗୁଡ଼ାଏ । ୩୦ । ସୁପାଣ୍ଡ—ଶ୍ୱେତ । ୩୧ । ଶତବାର ସଲବଣ ଦାହ ହେମ ଗଭସ୍ତି—ଶଏ-ବାର ଲୁଣରେ ପୋଡ଼ାହୋଇ ସଫା ହୋଇଥିବା ସୁନାପରି ଗୋରି । ଉଦନ୍ତ—ଖବର, ବାର୍ତ୍ତା । ସୁମନଶର—କନ୍ଦର୍ପ । ୩୨ । ଦିଶୁସାରଙ୍ଗ ଅସୃତଲୋଚନା—ଛୁଆହରିଣପରି ଦୀର୍ଘ ନୟନ ଯାହାର । ୩୩ । କରୋଦରେ—ହାତଉତରେ ।

---

# କେଳିକଳ୍ପଦ୍ରୁମ ଚଉତିଶା

୧ । କଞ୍ଜଲୋଚନ—ପଦ୍ମଆକ୍ଷି, କୃଷ୍ଣ । କ୍ରୋଧଭର—ଦୁଃଖ-ପୂର୍ଣ୍ଣ । କଳାକରମୁଖୀ—ଚନ୍ଦ୍ରମୁଖୀ ରାଧା । ୨ । ଖଟ୍ବାଙ୍ଗଧର-ଅରି—ଶିବଶତ୍ରୁ ମଦନ । ଖଚନ୍ଦ୍ରାନନା—ଚନ୍ଦ୍ରମୁଖୀ । ମୀନକେତୁ—କନ୍ଦର୍ପ । ୪ । ଘଟ୍ଟଣମୁଖୀ—ସୁନ୍ଦରମୁଖୀ । ଜଘନ—ଜଙ୍ଘ । ଘଟ୍ଟଣା—ଉପମା । ଶୁଭ୍ରକେଶୀ—ଚିକ୍କଣକେଶୀ । ଘନସାର—ଚନ୍ଦନ । ୫ । ଅପ୍ୟାନ—ଆପ୍ୟାୟନ, ତୃପ୍ତି, ବିଳାସ । ନନ୍ଦନ—ମଦନ । ୬ । ପକ୍ଷ୍ମଲାକ୍ଷୀ—ସୁନ୍ଦର ଅକ୍ଷିପତା ଥିବା ଅକ୍ଷି ଯାହାର । ୭ । ଛିଦ୍ର—ଛିଦ୍ର । ଛୁରସିନ୍ଧୁସୁତା—ଲକ୍ଷ୍ମୀ । କ୍ଷେଭ—କ୍ଷୋଭ, ଦୁଃଖ । ଛନ୍ଦାଳୀମଣି—ରସିକା । ୮ । ଯୋଗୀନ୍ଦ୍ରମୋହନୀ—ଶିବମୋହନୀ । କୁସୁମଶର—ମଦନ । ଘର ମାଣ୍ଡ—ବୃଦ୍ଧ । ୯ । ଝଳଆନନା—ଝଟକମୁଖୀ । ପୀନ—ବିପୁଳ । ଝୀନ—କ୍ଷୀଣ । ଝାଡ଼ରାଜ—ସିଂହ । ୧୧ । ଠମାଳ—ଅଠା । ୧୩ । ଢଙ୍ଗର—ଦୁଷ୍ଟ, ଧୂର୍ତ୍ତ । ୧୪ । ତମାଳ—ହସକଉତୁକରେ । ମୀନକେତୁ—କନ୍ଦର୍ପ । ୧୫ । ଏଣାଙ୍କମୁଖୀ—ଚନ୍ଦ୍ରମୁଖୀ । ୧୮ । ଦିନନାଥ ବନ୍ଧୁମୁଖୀ—ସୂର୍ଯ୍ୟର ବନ୍ଧୁ ପଦ୍ମ—ତାପରି ମୁଖ ଯାହାର—

ପଦ୍ମମୁଖୀ । ୧୯ । କୁସୁମ କାର୍ମୁକ—ଫୁଲଧନୁ । ୨୦ । ନାକ—ସ୍ୱର୍ଗ; ନାଗନାରୀ— ପାତାଳର ନାଗସ୍ତ୍ରୀ । ଜୀବଧାମ — ଜୀବନର ଆଶ୍ରୟସ୍ଥାନ । ୨୧ । ପଲ୍ଲବପ୍ରୀତି — ଶୃଙ୍ଗାରରେ ପ୍ରୀତି । (ପଲ୍ଲବ — ଶୃଙ୍ଗାର) । ପିଶୁନ — କ୍ରୂର । ୨୨ । ଫାଉ — ବଡ଼ । ଫୁରୁଣା — ଆନନ୍ଦ । ୨୪ । ଭାବିନୀ — ସୁନ୍ଦରୀ । ଉରଜ — ସ୍ତନ । ତ୍ରପ — ଲାଜ । ୨୬ । ଜଳଜାକ୍ଷି — ପଦ୍ମାକ୍ଷି । ୨୭ । ରସକଳା — ରସବତୀ । ୨୮ । ନହୁଲୀ — ନୂଆ । ୩୦ । ଶମ୍ବରାର ଶର — କନ୍ଦର୍ପଶର । ୩୧ । ଶମ୍ବରାରତାତ — ପ୍ରଦ୍ୟୁମ୍ନଙ୍କ କାମଦେବ, ତାଙ୍କ ପିତା ଶ୍ରୀକୃଷ୍ଣ । ଶଶିପ୍ରେକ — ଚନ୍ଦ୍ର । ସାରଙ୍ଗଧରଙ୍କୁ — କୃଷ୍ଣଙ୍କୁ । ୩୩ । ହିମାଂଶୁମୁଖୀ — ଚନ୍ଦ୍ରମୁଖୀ ୩୪ । ଷୀରସିନ୍ଧୁଜେମାପତିଚରଣ — ଲକ୍ଷ୍ମୀପତି — ଜଗନ୍ନାଥଙ୍କ-ପାଦ ।

---

## ପ୍ରେମଚିନ୍ତାମଣି ଚଉତିଶା

୭ । ଅବଛନ — ଅବିଚ୍ଛିନ୍ନ ଶବ୍ଦଜ, ସବୁଦା । ୧୦ । ନବର୍ତ୍ତାଉ — ମନାକରୁ । ୧୨ । ଠୂଳ ପୁରୁଷ — ସାକାରବ୍ରହ୍ମ । ୧୭ । ଥୋଇଥା ଗଣ୍ଡି ବସନେ — କାନରେ ଗଣ୍ଡି ପକାଇଥା ୧୯ । ତ୍ରୁଟି — କ୍ଷଣକାଳ; ଘଣ୍ଟାର ଏକ ଚତୁର୍ଥାଂଶ ସମୟ ବା ନିମେଷକ ସମୟ । ୨୩ । ବୃଜଳ୍ପ ଜନ୍ମିତ ମାରଣା ତା ଅକ୍ଷି — ଅଳ୍ପରେ ବୃଜଳ୍ପ ଅକ୍ଷି ଦେଖିଲା ଖଣ୍ଡ । ୨୪ ମର୍କତ ବଲ୍ଲୀ — ମରକତ ମଣିର ଲତା । ୨୯ । ବିବେକ ଚଢ଼ାଇ — ବିବେକ ଦେଖିଲ ପକ୍ଷୀ । ବିବେକ ଚଢ଼ାଇ ବେକ ମୋଡ଼ାଇଲାତ — ଅଭିମନ୍ୟୁ । ୩୩ । ସ୍ଥାନ — ଆଶ୍ରୟ । ୩୪ । ରସିକର ରସ — ରସିକାଶ୍ରୟ ଶ୍ରୀକୃଷ୍ଣଙ୍କ ରସ ।

---

## ଦୃତୀଚଉତିଶା

୧ । କଳ୍ପତରୁ ନବଅଙ୍କୁର—ବାଞ୍ଛାବଟର ନୂଆଗଜା—ଅଭୀଷ୍ଟଫଳ ଦାତା । ୨। ଖୀନନାଳ — କ୍ଷୀଣନାଳ — ସହସ୍ରଦଳ ପଦ୍ମର ଯେ ସୂକ୍ଷ୍ମନାଡ଼ି ତା ଉପରେ କୃଷ୍ଣଚନ୍ଦ୍ର ଅଛନ୍ତି । ୩ । ଗୋଲ୍ପଦ୍ୱାଠ — ମେରୁ ଶିଖରରେ ଅବସ୍ଥିତ — ଯୋଗର ବିଷୟ — ଶରୀରର ଡମ୍ଭଉପରେ ଯେ ତ୍ରିକୂଟ, । ତା ଉପରକୁ ଗୋଲ୍ପଦ୍ୱାଠ । ପରଭେଗୀତା ୧୮ଶ ଅଧ୍ୟାୟ ଦେଖ । ୪ । ଉଲଟ କଦମ୍ବ — ଶରୀର ମୂଳ ହେଉଛି ମୁଣ୍ଡ, ଶାଖା ହେଉଛି ହସ୍ତ ପାଦ । ଏହା ଗୀତାରେମଧ୍ୟ ଅଛି—"ଉର୍ଦ୍ଧ୍ୱମୂଳଂ ଅଧୋ ଶାଖମ୍"- ଇତ୍ୟାଦି, ମନୁଷ୍ୟର ଶରୀର ହେଉଛି ଉଲଟ କଦମ୍ବ, ତାର ମୂଳରେ—ଶିରର ଉର୍ଦ୍ଧ୍ୱଭାଗରେ । ୭ । ଛଡ଼ଚକ୍ର—ମୂଳ ବା ଆଧାରଚକ୍ର, ଲିଙ୍ଗ-ଚକ୍ର, ନାଭିଚକ୍ର, ହୃଦଚକ୍ର, କଣ୍ଠଚକ୍ର, ଓ ଲଲାଟଚକ୍ରରେ ଯଥାକ୍ରମେ ଗଣେଶ, କାମଦେବ, ବ୍ରହ୍ମା, ନାରାୟଣ, ଶିବ; ତା ଉପରେ କୃଷ୍ଣ । ଅବାଡ଼ ପ୍ରତିମା — ଜ୍ୟୋତିର ଲହରୀ ମଧ୍ୟସ୍ଥ ଦେବତା । ୯ । ଝୁର-ଖିଙ୍କେ—କଣ୍ଠ ଉପରେ ତାଳୁରେ । ୧୧ । ତ୍ରିବେଣୀ—ଇଡ଼ା, ପିଙ୍ଗଳା ଓ ସୁଷୁମ୍ନାର (ଗଙ୍ଗା ଯମୁନା ଓ ସରସ୍ୱତୀର) ମିଳନ ସ୍ଥାନ । ୧୨ । ଠୂଲଶୂନ୍ୟପରେ — ଅର୍ଦ୍ଧମାତ୍ରା ଉପରେ, ଭ୍ରୂଲତାର ମଧ୍ୟସ୍ଥାନର ଉପର ଭାଗରେ । ୧୪ । ଠିଅ — ସ୍ଥିତ, ରହିଅଛି । ୧୫ । ଅଣସର ଘରେ — ସୁଷୁମ୍ନା ଘରରେ । ୨୧ । ପର ପୀରତିରେ ପରମମିଳା—ପରମାତ୍ମା ରସରେ କୃଷ୍ଣଙ୍କ ସହିତ ଜୀବକୁ ଭେଟାଅ ଅନ୍ୟପାଠ—( ପରମସଙ୍ଗତେ ଜୀବକୁମିଳା ) ପରରଜ ବିଗ୍ରହ—ପରରଜ, ସପ, ବଦ—ଏହା ଗାୟତ୍ରୀର ମୂଳ ଶବ୍ଦ—ଏହାର ଅର୍ଥ ରଜ-ଗୁଣର ଉପର । ୨୨ । ଫୁଲ ମକରନ୍ଦ—ସହସ୍ରଦଳପଦ୍ମରେ । ଭ୍ରମର—ଶୁଦ୍ଧଜୀବ । ୨୩ । ବାରଅଙ୍ଗୁଳ ନିଶ୍ୱାସ, ବାରଅଙ୍ଗୁଳ ପ୍ରଶ୍ୱାସ । ଗୁର-

ଉର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା,—୪କଳା ମିଶାଇଲେ ବ୍ରହ୍ମଜ୍ଞାନ ହୁଏ । "ବାରକୁବାର ଚନ୍ଦ୍ରବଂଶ । ବାର ପରମହଂସ ମିଶି । ବାର ମିଶାଇ ବାରମେଳ । ଶିବ ଏ ରସେ ନିତ୍ୟଭୋଳ । ନାରଦମ୍ଭଲେ ବ୍ରହ୍ମଜ୍ଞାନୀ । ଅଛନ୍ତି ଏ ଭାବକୁ ଘେନି ।,, 'ବ୍ରହ୍ମଶାଙ୍କୁଳ,, ୧୧ଶ ପଟଳ ଦେଖ) ।

ଅନ୍ୟପାଠ—ବାର ବାର ବଣ କହୁଛି ସନ୍ତ ।

୨୭ । ରସ—ଭଳ—କୀର୍ତ୍ତନରେ ରସ ପ୍ରାପ୍ତହୁଏ—ଏଠାରେ ଲୀଳାଙ୍ଗର କଥା । ୨୮ । ଯୋଗ, ଭୋଗ, ଲୟ ଓ ଲୀଳା ଅଙ୍ଗରେ କ୍ରମିକ କୃଷ୍ଣରସ ନିଷ୍ପତ୍ତି ହୁଏ । ଯୋଗର ଲୟପରେ କୃଷ୍ଣ ଲୀଳାରେ ଲୋପ ମନ୍ତ୍ର—ଗୁରୁଭକ୍ତିଗୀତା ଦେଖ ।

ଶବଦ ଶୁଣଇ ଶିଶୁବେଦରେ—ସୁଷୁମ୍ନାମୂଳ ରେ; କାଂସ୍ୟ, ଝାଞ୍ଜାଳ ପ୍ରଭୃତି ଶବ୍ଦପରେ ବଂଶୀସ୍ୱନ ଶୁଭେ—ବ୍ରହ୍ମପ୍ରଣବ ସଲଗ୍ନାଦୋ ନ୍ୟୋତିର୍ମୟ୍ୟାତ୍ମକଃ । ମନସ୍ତତ୍ର ଲୟଂ ଯାତି ତଦ୍‌ବିଷ୍ଣୋଃ ପରମଂ ପଦମ୍ ।

---

## ଅଭିନ୍ନା ଚଉତିଶା

୧ । କଳାକର—ଚନ୍ଦ୍ର । କେହ୍ଣ—କପର । ୨ । ଜୀବ-ଖୋସଣି । ଅଙ୍କ—ବାହୁ । ୩ । ଗୁଣଗଉରବି—ଶୋଭାବତୀ । ୪ । ଡାଗଡ଼ା—କଣ୍ଠର ଅଳଙ୍କାର; ହେମ ଶିକୁଳି—ସୁନାସୂତା । ଘଟଣ—ସୁନ୍ଦର । ହେମଉରଜେ—ସୁନାବର୍ଣ୍ଣିର ସ୍ତନରେ । ୫ । ବଳଅଇ—ଅଗମଡ଼ାହୋଇ । ନନ୍ଦନ—କନ୍ଦର୍ପ । ୭ । ଶୁଣ୍ଡେ—ଶୀଘ୍ର । ୯ । ଝୁଲ—ଝୁଟକ । ଝୁଲଛି—ଜଡ଼ଯାଇଛି । ୧୦ । ନିଧୁବନ—ରତି । ୧୧ । ଟଙ୍କଧରରିପୁ—ଶିବଙ୍କର ଶତ୍ରୁ କନ୍ଦର୍ପ । ୧୨ । ଠାଠିକ ଅତିସୁନ୍ଦର ୧୩ । ବାତେ—ପବନରେ । ୧୪ । ଛଳଛଳ—ତରଳ, ଚଞ୍ଚଳ ।

୧୮ । ଦେବପାଣି—ସ୍ୱାନ । ଦେହଳ—ଘରର ପିଣ୍ଡାରେ । ୨୧ । ପରଶୁପାଣି—ମହାଦେବ । ୨୨ । ଫୁଟୁଛି—ଦିଶୁଦେଉଛି । ୨୩ । ନିବାସ—ନିବାସନ, ଏଠାରେ ପ୍ରବାସରେ । ମାଜିଲ୍ଲ ମଦନ ମୁକୁର—ତଳକର ଘଷାଦେବାରୁ ଝଟକୁଥିବା ଦର୍ପଣ—ତା ମଦନର ଦେଲେ ତୋ ମୁଖ ପରି । ପୂର୍ବେ ଧାତୁ ଦ୍ରବ୍ୟରେ ଦର୍ପଣ ହେଉଥିଲା; 'ନିଗ୍ରଚ' ଦେଖ । ୨୬ । ଜାଣେମଣି—ଜ୍ଞାନମୟୀ । ଜମ୍ବୁନଦଗୋରୀ—ସୁନାଗୋରୀ । ୨୭ । ରମ୍ଭା, ମେନୋକା, ତିଲୋତ୍ତମା—ଅପ୍ସରାମାନେ । ରତି—କନ୍ଦର୍ପର ସ୍ତ୍ରୀ । ଶଚୀ—ଇନ୍ଦ୍ରଙ୍କ ସ୍ତ୍ରୀ । ୨୮ । ଲକ୍ଷାରସରେ—ଅଲତାରେ । ୩୦ । ସରୋଜାକ୍ଷି—ପଦ୍ମାକ୍ଷି । ଉପବର୍ଣ୍ଣ—ଓଢଣି । ୩୩ । ସୁରତ ସଦନରେ—କେଳିଗୃହରେ । ୩୪ । ନିଶାକରମୁଖୀ—ଚନ୍ଦ୍ରମୁଖୀ । ପଟାନ୍ତର—ତୁଳନା ।

---

## ବା ଚଉତିଶା

( ଲୋକନାଥ )

୧ । ସ୍ୱର—ଡାକ । ୨ । ଖନ—ଫସଲ । ସାଇଁଥିବେ—ବସାଉଥିବେ, ଘଡ଼ୁଥିବେ । ୩ । ଗାରଡ଼ି—ମାୟାବିଦ୍ୟା, କେଳାଉଯନ୍ତ୍ର । ସ୍ୱରସ୍ତ—( ସ୍ୱୟମ୍ଭୁ ) ସ୍ୱାମୀ । ୪ । ନେତ—ନୀତ, ଶ୍ରେଷ୍ଠ । ୫ । ଭୂଆ—ସ୍ୱାମୀ । ୬ । ଚଉଦଶସ୍ୱେ—ଚଉଦଶାରେ ବଦିଲ ବ୍ରାହ୍ମଣମାନେ । ମଦ୍ୟପ—ମନୁଷ୍ୟ ।୭। ଛତ୍ରି—ଷତ୍ରିୟ । ୮ । ଭ୍ରାନ୍ତି—ମଦରାଙ୍କବା ଚାଲି । ୧୦ । ନସତ—ମିଛୁଆ । ୧୪ । ନମନ୍ଦତା—ଅମନ୍ଦତ । ୧୬ । ବ୍ୟାଘ୍ରା—ବିବାହିତା । ଥେଣ୍ଟ—ଗ୍ୱେର । ୧୮ । ପୋଇଲା—ଗ୍ରକର, ଗୋଲାମ । ଦାଉଣ୍ଡି—ବେଙ୍ଗଲା ବଳଦ । ୧୯ । ତକଣି—ଚକଚକିଆ ।

୨୦ । ନସତ—ଅସତ୍ୟରେ ବା ଅଳସପଣରେ । ଖନ—କୃଷି । ହନୁସନୁ—ହଇରାଣ । ୨୧ । ଲୋକ—ଶୂକର । ୨୨ । ସାହୁ—ମହାଜନକୁ । ୨୩ । ପାଇଛ—( ବାଦସା ଶବ୍ଦର ଅପଭ୍ରଷ୍ଟ ) ବଡ଼ରାଜା । ୩୨ । ଅପଟ—ବେହେସ୍ତ । ୩୩ । ହମ—ହିମାଳୟ ।

---

## ବା ଚଉତିଶା

### ( କପିଳ )

୨ । ରାଗେ ଲଗାଇଲ କଳ—( ପାଠଶୁଦ୍ଧ )—ରୋଗେ ଲଗାଇଲ କେଳ—( ପାଠ ଅଶୁଦ୍ଧ ) ଖୁମାଣପଣେ—କ୍ରୋଧରେ, ବଳାତ୍କାରରେ ବ୍ରାହ୍ମଣ ପୁଅ ଦେହରେ ଧୂଳ ପକାଇଲ—ବନ୍ଧୁ ତାର ପିତା ଅନ୍ଧ ଆଗରେ କହିଲ ଯେ ତା ପୁଅ ତୁମ ଅଙ୍ଗରେ ଧୂଳ ପକାଇ ଅଛି; ତାକୁ ଦେଖିବାକୁ କହିବାରୁ ତା ଆଖି ଫିଟିଗଲା । (ଅଚ୍ୟୁତଙ୍କ ହରିବଂଶ ଦେଖ) । ୫ । ଗଉଛୁ—ଗଛୁଛୁ, ମଣ୍ଡିଛୁ, ଶୋଭାପାଇଛୁ । ୭ । ପଡ଼ଡାନଡ—ପଡ଼ିଲାପଡ । ଲକ୍ଷ୍ମଣରୂପେ ସୂର୍ପଣଖା ନାସା ଛେଦିଲ । ୮ । ଜନ୍ମପଢ—ଯମ । ଦଙ୍କର—ଶୂକର । ପାଷାଣ—ଅହଲ୍ୟା । ଅସୁରୀ—ତାଡ଼କା । ୯ । ଧ୍ୟମକ୍ଷେ—ଅଳ୍ପକରେ । ଅସୁର—ଶିଶୁପାଳ । ରାଜାରଝିଅ—ରୁକ୍ମିଣୀ । ୧୦ । ଅନ୍ୟାମ—ଅଭୁଲ । ଦ୍ରୂପଝିଢ—ଦ୍ରୌପଦୀଙ୍କ । ବଜ୍ରସେଢା—ବଜ୍ରକବଚ—ରକ୍ଷକ । ନନ୍ଦକୁ ବରୁଣରାଜା ନେଇଥିଲେ ତାଙ୍କୁ ଉଦ୍ଧାରକଲ ଓ ଗୋପୀମାନଙ୍କୁ ଅଗ୍ନିମୁଖରୁ ରକ୍ଷାକଲ । ୧୩ । ଡମ୍ବରୁଧର—ଶିବ । ୧୫ । ଅଣଅଭୃଢ—ଅଣାହାର । ମଣି—ସ୍ୟମନ୍ତକମଣି ।

୧୬ । ଚଲେକର—ଚକ୍ରଯୁକ୍ତର—ମନ ଲଗାଅ । ୧୮ । ବ୍ରାହ୍ମଣମିତ—ସୁଦାମା ବିପ୍ର ଭୁମୃର ମିତ । ୧୯ । ଧରଣୀଧର—କୃଷ୍ଣ । ଦୈତ୍ୟ—ଜରାସନ୍ଧ । ୨୦ । ଗୋପରେ ଅଗ୍ନି ଭକ୍ଷଣ ଭାଗବତରେ ଦ୍ରଷ୍ଟବ୍ୟ । ୨୧ । ସମ୍ବଳ—ଧନ । ଶଙ୍କର ଓ ଯମ ନାମ ଭଜ ଅଛନ୍ତି ବା ନାମ ନଲେ ଯମ ଯେ ସେ ମଙ୍ଗଳକାରୀ ହୁଅନ୍ତି । ୨୨ । ଘାଇ—ବଡ଼ । ଫୁରୁଣା—ପ୍ରଦ୍ୟୁମ୍ନ । ଘାଇ—ବନ୍ଧୁ । ୨୪ । ଭଜ (ଭୂଜ ଭୂଲ) ଠେକ । ଭୋଲାନାଥ—ଶିବ । ୨୫ । କଂସର କୁବଳୟା ହସ୍ତୀଦନ୍ତ ଉପାଡ଼ିଲ । ୨୬ । ଗୁରୁପୁତ୍ର—ସାନ୍ଦିପନି ଋଷିଙ୍କ ପୁତ୍ର । ଘଟ—ଯୋଗ୍ୟ । ୨୭ । ଋଷି—ମାର୍କଣ୍ଡେୟ । ୨୯ । ବ୍ରାହ୍ମଣକନ୍ୟାମାନେ ବୃନ୍ଦାବନରେ କୃଷ୍ଣଙ୍କ ଦର୍ଶନ କରିବାକୁ ଯାଇଥିଲେ ତାଙ୍କୁ ପ୍ରବୋଧଦେଇ ଗୃହକୁ ଫେରାଇ ଦେଇଥିଲେ । ବଜ୍ରଧର—ଇନ୍ଦ୍ର । ଇନ୍ଦ୍ରଧ୍ୱଜ ପୂଜା ବନ୍ଦକରାଇ ଗୋବର୍ଦ୍ଧନଗିରି ଟେକି ଇନ୍ଦ୍ରକୁ ଅପମାନଦେଲ । ଦଶଶିର—ରାବଣ । ୩୨ । ଭୃତ୍ୟପାଦ—ଭୃଗୁଙ୍କ ପାଦପ୍ରହାର । ୩୪ । କାଞ୍ଚିପାଖବେଳେ ମାଣିକ ଗଉଡ଼ୁଣୀଠାରୁ ଦୁଧଖାଇ ତାକୁ ମାଣିକ୍ୟ ମୁଦି ଦେଇ ଯାଇଥିଲ ।

---

## କଳସା ଚଉତିଶା

୧ । ହେମନ୍ତ ଦୁଲଣୀ— ହିମାଚଳ କନ୍ୟା ପାର୍ବତୀ—ପିତାମଣି—ଭଲ ବାପା ( ବିରକ୍ତି ବା ପରିହାସ ସୂଚକ ଉକ୍ତି ) ୨ । ସାହାସେଣ ଶ୍ୱାସବେଗରେ । ୩ । ମୁଦ୍ରା—କାଠ ବା କଇଁଛ ଖୋଲର ମୋଡ଼ିଅ ଯାହାକୁ ବାବାଜିମାନେ କାନରେ ପିନ୍ଧନ୍ତି । ବେଭଲ—ବିହ୍ୱଳ । ୪ । ଘଟ ଘଟ—ଥରକୁଥର । ଲୋଷ୍ଟୁଏକ—

ଫୁଲାଏ । ୫ । ଖଣି ଖଣା— ଖଣିଗାଡ । ୬ । ଚକୋର—ଚନ୍ଦ୍ରୀ, କପଟୁଆ । ୭ । ଛିନ୍ନ—କ୍ଷୀଣ । ଗନ୍ତା—ଚିର୍ ଲୁଗାରେ ସିଲାଇ ହୋଇ ଉଥିର ହୋଇଥିବା ରେଖାଇ । ଖର—ଖାର ଖଦଜ । ୮ । ଜଙ୍ଗମକୁ- ବାବାଜୀଠାକୁ ।୯। ଝମକୁଣ ଧର—ଧରି କର ଦବ ବା ନଇଁ ଯାଉଛି ୧୦ । ନପଢେଣ—ଦୁର୍ବଳ ଭାବରେ । ଭୁଚ—ଭଲାଗେ । ୧୧ । ଠକ ଠକ—ଶୁଖିଲା ଝୋଡାନ୍ ହୋଇ । ଟାକର୍—ହୀନ ଦରଦ୍ର । ନର୍ମଖି—ନରାଶ୍ରୟ । ଅପାବନ—ଅପବିତ୍ର । ଭୂଷିତ ।୧୩। ଡଙ୍ଗର—ଧୂର୍ତ୍ତ କପଟୀ ବା ସେବକଙ୍କ ଭାଗ୍ୟ—ମୃଦାଦିଅ ପାତଲା ।୧୪। ଢୋରଂ—ହୀନ,ନୀଚ ତୋକର୍—ଅତ୍ତିଦୁର୍ବଳଅ ବୃଦ୍ଧା । ଉମାଳ—ହସକଥା । ନବର ସ୍ଥାନରେ ନକର ପର । ୧୫ । ଅଣମନୁଷ୍ୟ—ଅମନୁଷ୍ୟ । ଅଣଖ— ଲଜ୍ଜା ବା ନନା । ଅଣଉହାଡ଼ରେ—ଅଳ୍ପଉହାଡଥିବ ଅଥଚ ଦେଖା ଯାଉଥିବାସ୍ଥାନରେ । ୧୬ । ତଡ଼ବେ—ଅତିଶୀଘ୍ର । ୧୮ । ତଜଣ ତୃଣ,ଘାସ । ୧୯ । ମୁଦୁସୁଲୀ—ଦାସୀ । ୨୨ । ଫରମାଣ—ଆଜ୍ଞାଅଜ୍ଞା ଫରସେ—ସେବକ ପକ୍ଷରେ, ଭଲକର । ୨୭ । ଓଢ଼ିଆଣି—କଟି ମେଖଳା । ରାଜୀବ—ପଦ୍ମ । ୨୯ । ଟମ୍ବା—ଆସନ ବିଶେଷ । ୩୪ । କାଦ—ବିବାହର ପଞ୍ଚମଦିବସର କୃତ୍ୟ ବିଶେଷ ।

---

## ରସକୁଲ୍ୟା ଚଉତିଶା

୧ । ଗ୍ରୀହା—ଗ୍ରୀଧା । ଲୁବଲସ୍ୱା ଫଳ—ମୋଛ । ୨ । ଶକ୍ର— କୋଦଣ୍ଡ—ଇନ୍ଦ୍ରଧନୁ । ୪ । ବାବେ—ବଜାଏ । ଘାଉ—ଘାତ । ଘାଉଆ—ଘାତପ୍ରାପ୍ତ । ୫ । ସଦନମୁଖ—ଘରମୁଖ । ୬ । ଚଞ୍ଚଳା— ଲକ୍ଷ୍ମୀ । ଚତୁରାନନ—ବ୍ରହ୍ମା । ଚନ୍ଦ୍ରଶେଖର—ମହାଦେବ ।

୭। ଜମ୍ବୁନଦ — ସୁନା । ଯାମିନୀ—ରଜନୀ ।୯। ଝିମଣ୍ଡକେ — ଭୂଗତରେ । ଝାଡ଼କା — ଶୀଘ୍ର । ଝସକେତନ — କନ୍ଦର୍ପ । ଝଗଡ଼ — ଦୋଷଦେଇ କହୁଛି । ଝୀନପଦନୀ — ସରୁଲୁଗା । ୧୦ । ମଦନ — କାମଦେବ । ୧୧ । ରଣଜଣ — ଅସ୍ତବ୍ୟସ୍ତ । ୧୨ । ଭ୍ରିଖଭାନ୍ — ବୃଷଭାନ୍ । ୧୩। ଡ଼ଂସିଲା-ଦଂଶିଲା । "ଭୁଜୋହ୍ନଲୁ ନାଶ" ପାଠ ଠିକ "ଜୋହ୍ନଲୁ" ଛାଡ଼ ଅଛି । ୧୫ । ଏଣୀନୟନୀ—ମୃଗନୟନାରାଧା । ଅଣମନୁଷ୍ୟ—ନପୁଂସକ । ୧୭ । ତିମିର — ରାତି । ୧୮ । ଜମ୍ବୁନଦ — ସୁନା । ୧୯ । ଧରଣୀଧର — କୃଷ୍ଣ । ଧ୍ରୁବ — ଠିକ । ୨୦ । ନ ଆସିବେ — ଆସିବେ ନାହିଁ । ୨୧ । ବଘଂସ — ବକସେଢ । ୨୨। ଫାର — ଭଲ,ଚମତ୍ଠ ୨୫ । ହେମ ଲତିକା — ସୁନାଲତା ରାଧା । ୨୬ । ସେହାଣ — ଚତୁରୀ । ଉନ୍ମାଦେ — ଉନ୍ମତ୍ତଭାବରେ । ୨୭ । ଉରଜ — ସ୍ତନ । ମତ୍ତା — ମତ୍ତ ୨୮ । ଲଖ — ନଖ । ୩୦ । ଜବସା — ଜୁଡ଼ା — ମୃଗମଦ — କସ୍ତୁରୀ । ୩୨ । ହିଙ୍ଗୁଫଳ — ମୁକ୍ତା । ୩୩ । ପରାଧିନୀ — ଅପରାଧିନୀ ।

---

## ଯାନ କନଡା ଚଉତିଶା

୨ । ସାଧୁଗୋଷ୍ଠିରେ — ସାଧୁସଙ୍ଗରେ ବା ସଭାରେ ।୩। ଗନ୍ଧବ—ଗନ୍ଧଳ ବା ଧନ୍ଦଭ । ଘାଠ — ନିକୃଷ୍ଟ, ଉଣା । ୪ । ଘାଏ — ଘାତରେ ପ୍ରହାର କରେ ।୭। ଖେଦ — କ୍ଷୋଭ, ଦୁଃଖ ।୮। ଯତନେ — ଉତ୍କୃଷ୍ଟ ବସ୍ତ୍ରରେ ।୯। ଝଗଡ଼େ — ଧନ୍ଦଳଣ, ବିବାଦରେ । ଝେଝଇ—ଅସ୍ତବ୍ୟସ୍ତ ଝଙ୍କାର — ଓଙ୍କାର ଝିଙ୍କି । ୧୦ । ନଠ ଘଠ — ବୃଥାବ୍ୟସନରେ ଖେଳ କଉତୁରେ । ୧୧ । ଠକର — କ୍ଷୁଦ ବା ଉଚ୍ଚଜାଗା । ଠୋପରେ — ଖାଲରେ । ଠେକ — ଉଚ୍ଚସ୍ୱରରେ । ୧୨ । ଠାଠିକ — ଉପଯୁକ୍ତ,

ପ୍ରକୃତ ଠିକ୍ । ଠଣ—ଉତ୍ତମ । ୧୫ । ଅଣିମାଦ—ଅଣିମା—ଲାଘିମା, ପ୍ରାକାମ୍ୟ ଇତ୍ୟାଦ ଷଡ଼୍ ଐଶ୍ୱର୍ଯ୍ୟ । ଅଗୋଷ୍ଟି—ଅସାଧୁ । ୧୭ । ଢେଷ୍ଟ—ଧୂର୍ତ୍ତ, ଦୁଷ୍ଟ । ଅଳା ରଖିଥିଲ—ଛେଳରଖିଥିଲ । ୨୮ । ଲେଷ୍ଟିଲ—ଖଡ଼ିଲ । ୩୨ । ଷଡ଼ ମୁକୁଳ—ସାତପାଖୁଡ଼ା । ୩୪ । ତ୍ରିଗୁଣ—ସତ୍ତ୍ୱ, ରଜ ଓ ତମ, ପ୍ରକୃତିମାୟା ।

---

## କଳିଗମନ ଚଉତିଶା

୧ । ହେଠ—ଅଧ,ତଳୁଅ । କ୍ଷକେ—କ୍ଷପାଇଁ । କବରୀ—ଜୁଡ଼ା । ୩ । ନିଅଡ଼ିଅଛୁ—ତଳେ ପକାଇ ଅଛୁ । ୩ । ଗନ୍ଧବ କର—ଗନ୍ଧଳ ବା ଧନକ । ୪ । ଘାଉ—ଆଘାତ ପ୍ରାପ୍ତ ।୫। କ୍ଷକେ କନମେତ୍ର । । ୧୧ । ଠଙ୍କାର—ଅବହେଳା । ୧୫ । ଅଣଶ—ନନ୍ଦନ ବା ଲଙ୍କେତ ହୋଇ ? ୧୬। ଫୁଟୁଛି—ଦଗ୍ଧହେଉଛି । ନାସ—ଗଜ ଛନ୍ଦ; ବା ମୋତେ ନାସ—ଭସ୍ମ ଲଗାଇ । ୧୭ । ଥବର—ସ୍ଥିର । ୨୦ । ଭମାଙ୍ଗୀ—ଦୁର୍ଦାଙ୍ଗୀ । ନନ୍ଦନ—କନ୍ଦର୍ପ । ୨୨ । ଫୁରୁଣା ମନର ପ୍ରଫୁଲ୍ଲତା । ମୀନକେତୁ—କନ୍ଦର୍ପ । ୨୫ । ମନୋଜ—କନ୍ଦର୍ପ । ୨୬ ଜମ୍ବୁନଦ—ସୁନା

---

ପ୍ରାଚୀ ସମିତି ପ୍ରକାଶିତ

# ଚଉତିଶା-ମଧୁଚକ୍ର

ଦିନକୁ ଦିନ ବଢ଼ିଲା

ପାଠକର !                                        ପାଠକର ! !

ତିନିଖଣ୍ଡ ପ୍ରକାଶିତ ହୋଇଥିଲା, ଚତୁର୍ଥଖଣ୍ଡ ବାହାରିଲା ।

ଉତ୍କଳର ପୁରାତନ ସାହିତ୍ୟ-ସମୁଦ୍ର ମନ୍ଥନରୁ କେତେ ଯେ ଚଉତିଶା-ରତ୍ନ ମିଳୁଛି ତାହାର ଇୟତ୍ତା ନାହିଁ—ତେଣୁ କହି ହେଉନାହିଁ ଚଉତିଶା ମଧୁଚକ୍ର କେତେ ଖଣ୍ଡରେ ପୂର୍ଣ୍ଣହେବ ।

ପ୍ରତେକ ଖଣ୍ଡର ମୂଲ୍ୟ ଆଠଅଣା

## ପ୍ରଥମ ଖଣ୍ଡ

ବାନ୍ଧବ ଚଉତିଶାରୁ—

କ୍ଷଣେ ଯେ ପାଶରୁ ମୋତେ ନକରୁ ଅନ୍ତର
ଖଳ ଦଇବ ବଶରୁ ହେଲ ଏତେ ଦୂର
ଆହା ବାନ୍ଧବ ରେ !
ଗଳାରେ ବାହୁ-ବନ୍ଧନ ବେଢ଼ାଇ ମୋହର
ଗେଲାଇ ଯେ ବୋଲୁଥାଉ ନୋହିବା ଅନ୍ତର
ଆହା ବାନ୍ଧବ ରେ !

## ଦ୍ୱିତୀୟ ଖଣ୍ଡ

ଘନଶ୍ୟାମ ଚଉତିଶାରୁ—

ଖଳ ରାହୁ ବଦନର                    ଅମୃତ ହେଲା ପ୍ରାପ୍ତ
କାମମୁଖେ ଅମ୍ଭଙ୍କୁ ଦେଇ

ଖଣ୍ଡେ ସମସ୍ତ ସୁଖ ମଣ୍ଡନ କର ଦୁଖ

ସଜ ହୋଇଛ ଯିବାପାଇଁ ହେ

ଘନଶ୍ୟାମ !

ଖାଇ ମରନ୍ତୁ ଅବା ବିଷ

ଖଣ୍ଡିତ ଅଛି ତାହା ଦୋଷ

ଖାଅଇ ସୁଧାକର ଅମୂଲ୍ୟ ମନୋହର

ରଙ୍ଗିମା ଅଧରୁ ପୀୟୂଷ ହେ । ୬ ।

## ତୃତୀୟ ଖଣ୍ଡ

ନବଘନ ଚଉତିଶାରୁ—

ଖାଇବା ଖେଳିବା ସୁଖ

ଛଣକେ ଡେଙ୍ଗଲେ ପଙ୍କଜମୁଖ—ନବଘନ !

ଦେଇଗଲେ ନାନା ଦୁଖ—ନବଘନ ! । ୧ ।

ଯଶୋଦା ନନ୍ଦନ କାହ୍ନୁ

ଜୀବ ଥିବାଯାକେ ନ ଯିବେ ମନୁ—ନବଘନ !

ଜୀବ ଗଲେ ଯିବେ ମନୁ—ନବଘନ ! । ୮ ।

## ଚତୁର୍ଥ ଖଣ୍ଡ

ପ୍ରେମଚନ୍ଦ୍ରାମଣି, ମହାଙ୍କଙ୍କ ଚଉତିଶା ପଢ଼ନ୍ତୁ ।—

ନାଁ ସବୁଯାକ ପଢ଼ନ୍ତୁ ।

ପ୍ରାପ୍ତିସ୍ଥାନ :—

**ପ୍ରାଚୀ ବୁକ୍‌ଷ୍ଟଲ, ଗଣେଶଘାଟ—କଟକ ।**

